





# ଶ୍ରୀଜଗନ୍ନାଥଙ୍କ ଉତ୍ପତ୍ତି

ଡଃ ହରିହର କାନୁନ୍‌ଗୋ

**ବି**ଭିନ୍ନ ସମୟରେ ଶୈବ, ଶାକ୍ତ, ବୈଷ୍ଣବ, ଜୈନ ଓ ବୌଦ୍ଧ ଧର୍ମମାନ ଓଡ୍ର ଏବଂ କଳିଙ୍ଗ ଭୂମିରେ ପ୍ରାଧାନ୍ୟ ବିସ୍ତାର କରି ଆସିଥିଲେ ମଧ୍ୟ ଏଠାରେ ବସବାସ କରୁଥିବା ଆଦିବାସୀ ଜନସାଧାରଣ ସ୍ତମ୍ଭ ଉପାସନାକୁ ହିଁ ନିଜ ଉପାସନାର ପ୍ରଧାନ ମାର୍ଗ ରୂପେ ବିବେଚନା କରୁଥିଲେ । ବିଭିନ୍ନ ସମୟରେ ଏମାନେ ଅନ୍ୟାନ୍ୟ ଧର୍ମପ୍ରତି ସାମୟିକ ଭାବେ ଆକୃଷ୍ଟ ହେଉଥିଲେ ମଧ୍ୟ ସ୍ତମ୍ଭ ଉପାସନାକୁ ପରିତ୍ୟାଗ ନକରି ନିଜ ଉପାସନାର ପ୍ରାଧାନ ମାର୍ଗ ରୂପେ ବିବେଚନା କରୁଥିଲେ । ଭିନ୍ନ ଭିନ୍ନ ସମୟରେ ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ଏମାନଙ୍କୁ ଆକୃଷ୍ଟ କରି ନିଜ ନିଜ ଧର୍ମ ସହିତ ଚିହ୍ନିତ କରିବା ପାଇଁ ଉଦ୍ୟମ କରି ଆସିଥିଲେ ହେଁ ଏହି ଆଦିବାସୀ ଜନଜାତି ସ୍ତମ୍ଭ ଉପାସନାକୁ ପରିତ୍ୟାଗ କରିପାରିନଥିଲେ । ଏହି ଆଦିବାସୀ ଜନଜାତି ଯେଉଁ ସ୍ତମ୍ଭ ଉପାସନାକୁ ଗ୍ରହଣ କରିଥିଲେ, ତାହାର ଅୟମାରମ୍ଭ ଠିକ୍ କେବେଠାରୁ ହୋଇଥିଲା ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ । ଇତିହାସରୁ ଜଣାଯାଏ ଯେ ଏମାନଙ୍କ ମଧ୍ୟରେ ପ୍ରଥମେ ବୃକ୍ଷ ପୂଜା ହିଁ ପ୍ରଚଳିତ ଥିଲା । ପରବର୍ତ୍ତୀ ଅବସ୍ଥାରେ ଏହି ବୃକ୍ଷ ପୂଜା ଦାରୁଖମ୍ଭ ବା ପ୍ରସ୍ତର ସ୍ତମ୍ଭର ଉପାସନାରେ ପରିଣତ ହୋଇଥିଲା । ଏ ସଂପର୍କରେ ମତାମତ ଦେବାକୁ ଯାଇ ଡକ୍ଟର ସତ୍ୟନାରାୟଣ ରାଜଗୁରୁ କହିଛନ୍ତି, 'ପାର୍ବତ୍ୟ ଜାତି କାଷ୍ଠ ବା ପାଷାଣରେ ଦେବତ୍ୱ ଆରୋପ କରି ପୂଜା କରୁଥିଲେ । ଖ୍ରୀଷ୍ଟପୂର୍ବ ୧୫୦୦ ବା ୧୦୦୦ ବର୍ଷ ମଧ୍ୟରେ ପାର୍ବତ୍ୟ ଜାତିମାନଙ୍କ ମଧ୍ୟରେ ଯେଉଁ କାଷ୍ଠ ନିର୍ମିତ ସ୍ତମ୍ଭ ଭୂମିରେ ପ୍ରୋଥିତ ହୋଇ ପୂଜା ପାଉଥିଲେ, ତାହା କେତେକ ନିର୍ଦ୍ଦିଷ୍ଟ ବୃକ୍ଷର ଅଂଶବିଶେଷ । ସାଧାରଣତଃ ବଟ, ଅଶ୍ୱତ୍ଥ, ରୋହିଣୀ, ନିମ୍ବ ପ୍ରଭୃତି ବୃକ୍ଷ ହିଁ ଆରାଧନା ପାଇଁ ପ୍ରକୃଷ୍ଟ ଉପାଦାନ ରୂପେ ଗୃହୀତ ହେଉଥିଲା ।

କଳିଙ୍ଗ ଏବଂ ଓଡ୍ରର ପୁରପଲ୍ଲୀ ଓ ଅରଣ୍ୟାନୀ ମଧ୍ୟରେ ବସବାସ କରୁଥିବା ଜନଜାତି ବସ୍ତିର ଉପକଣ୍ଠରେ କୌଣସି ଏକ ବୃକ୍ଷସ୍ଥଳରେ ଦାରୁ ବା ପ୍ରସ୍ତର ଖମ୍ଭ ସ୍ଥାପନ କରି ତାହାର ପୂଜା ଆରାଧନା କରୁଥିଲେ । ଏଡି ଦାରୁ ବା ପ୍ରସ୍ତର ଖମ୍ଭର ଏକ ନିର୍ଦ୍ଦିଷ୍ଟ ଆକାର ରହିଥିଲେ ମଧ୍ୟ ପ୍ରକୃତରେ ଏହାର ଉପାସନା ପ୍ରତୀକଧର୍ମୀ । ଏହାରି ଉପାସନା ମାଧ୍ୟମରେ ସେମାନେ ନିଜର ଅନ୍ତର୍ମୁଖୀ ଚେତନାକୁ ଜାଗ୍ରତ କରାଇ ତନ୍ମଧ୍ୟରେ ଭଗବତ୍ ସତ୍ତାର ଉପଲବ୍‌ଧି କରିପାରୁଥିଲେ । ଏ ଦୃଷ୍ଟିରୁ ଏହି ଖମ୍ଭର ଆକାର ଓ ପ୍ରକାର ସେମାନଙ୍କ ପାଇଁ ଅପ୍ରାସଙ୍ଗିକ ଥିଲା । ଶୈବ ଧର୍ମରେ ଯେଉଁ ଲିଙ୍ଗ ଉପାସନା କରାଯାଏ, ତାହା ସମ୍ଭବତଃ ଏହି ସ୍ତମ୍ଭ ଉପାସନାରୁ ହିଁ ସୃଷ୍ଟି ହୋଇଅଛି । ଶିବ ଲିଙ୍ଗରେ ଯେଉଁ ପ୍ରସ୍ତର ଖଣ୍ଡ ପୂଜା ଉପାସନା କରାଯାଇ ଥାଏ, ତାହାର ଏକ ନିର୍ଦ୍ଦିଷ୍ଟ ଆକାର ରହିଥିଲେ ମଧ୍ୟ ଏହାକୁ ପ୍ରତୀକଧର୍ମୀ ଉପାସନା ବୋଲି କୁହାଯାଇଥାଏ । ସ୍ତମ୍ଭ ଉପାସନା ଭଳି ଏହି ଉପାସନା ମାଧ୍ୟମରେ ଭକ୍ତ ନିଜର ଅନ୍ତର୍ମୁଖୀ ଚେତନାକୁ ଜାଗ୍ରତ କରାଇ ତହିଁରେ ଭଗବତ୍ ସତ୍ତାର ଉପଲବ୍‌ଧି କରିଥାଏ । ଏଥିରେ କୌଣସି ଦେବଦେବୀଙ୍କର ପୂଜା ଆରାଧନାର ସ୍ଥାନ ନାହିଁ । ଏ ଦୃଷ୍ଟିରୁ ସ୍ତମ୍ଭ ଓ ଲିଙ୍ଗ ଉପାସନା ମଧ୍ୟରେ ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଓଡ୍ର ଏବଂ କଳିଙ୍ଗ ଭୂମିର ସମସ୍ତ ପୁରପଲ୍ଲୀ ଓ ଅରଣ୍ୟାନୀ ମଧ୍ୟରେ ଏହି ସ୍ତମ୍ଭ ଉପାସନା ସର୍ବତ୍ର ଏତେ ବ୍ୟାପକ ଭାବରେ ପ୍ରଚଳିତ ଥିଲା ଯେ ଏହା ବସ୍ତୁତଃ ଏକ ରାଷ୍ଟ୍ରଧର୍ମ ରୂପେ ମୁଣ୍ଡଟେକି ରହିଥିଲା । ରାଷ୍ଟ୍ରଧର୍ମ ରୂପେ ମୁଣ୍ଡ ଟେକିବାପାଇଁ ଏହା ପଛରେ କୌଣସି ରାଜାନୁଗ୍ରହ ନଥିଲା । ବରଂ ସମଗ୍ର ଜନସାଧାରଣଙ୍କର ଆଗ୍ରହ ଓ ସ୍ୱୀକୃତି ଯୁଗ ଯୁଗ ଧରି ଏହା ପଛରେ ରହି ଆସିଥିଲା । ଏଇଥିପାଇଁ ଅନ୍ୟାନ୍ୟ ଧର୍ମର ପ୍ରଚାରକମାନେ ଏହାକୁ ନିଜ ଧର୍ମ ସହିତ ଚିହ୍ନିତ କରାଇ ନିଜ ନିଜ ଧର୍ମର ପ୍ରଚାର ଓ ପ୍ରସାର ବୃଦ୍ଧି କରିବା ପାଇଁ ଆଗ୍ରହୀ ଥିଲେ । ଶୈବ, ବ୍ରାତ୍ୟ, ଭାଗବତ, ଜୈନ, ବୌଦ୍ଧ ଓ ବ୍ରାହ୍ମଣ୍ୟଧର୍ମର ପ୍ରଚାରକମାନେ ଏହି ସ୍ତମ୍ଭ ଉପାସନାକୁ ନିଜ ଧର୍ମ ସହିତ ଚିହ୍ନିତ କରାଇ ସାଧାରଣ ଜନତାଙ୍କୁ ନିଜ ନିଜ ଧର୍ମର ପରିସର ମଧ୍ୟକୁ ଆକର୍ଷିତ କରିବା ପାଇଁ ଉଦ୍ୟମଶୀଳ ଥିଲେ । ଏକପକ୍ଷରେ ବିଭିନ୍ନ ଧର୍ମ ପ୍ରଚାରକମାନେ ଏହି ଖମ୍ଭ ବା ସ୍ତମ୍ଭ ଉପାସନାକୁ ନିଜ ଉପାସନାର ପରିସର ମଧ୍ୟକୁ ଆଣିବା ପାଇଁ ଚେଷ୍ଟା କରୁଥିବାବେଳେ ରାଜନୀତିକ ଓ ସାମାଜିକ ସ୍ତରରେ ମଧ୍ୟ ଧର୍ମଗତ ଐକ୍ୟ ମାଧ୍ୟମରେ ରାଜନୀତିକ ଐକ୍ୟ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରାଯାଉଥିଲା ।





ଏଇଥିପାଇଁ ଖମ୍ବ ଉପାସନାସମେତ ଶୈବ, ନାଥ, ବୌଦ୍ଧ, ଜୈନ ଧର୍ମପରି ମୁଖ୍ୟ ଧର୍ମଗୁଡ଼ିକର ପରମ୍ପରା ଓ ଭାବଧାରାକୁ ଏକତ୍ର କରି ଜଗନ୍ନାଥଙ୍କ ମୂର୍ତ୍ତିର କଳ୍ପନା କରାଯାଇଥିଲା । ଏହି ମୂର୍ତ୍ତିର ପରିକଳ୍ପନା ଠିକ୍ କେଉଁ ସମୟରେ ଓ କେଉଁ ସ୍ଥାନରେ କରାଯାଇଥିଲା, ତାହାର କୌଣସି ଇତିହାସ ଲିପିବଦ୍ଧ ହୋଇନାହିଁ ।

ପ୍ରାଚୀନ ଓଡ୍ରଦେଶରେ ମୁଖ୍ୟତଃ ଓଡ୍ର, ଶବର, କନ୍ଧ, ଗଣ୍ଡ, କୋହ୍ଲ, ମହ୍ଲାର, ଜୁଆଙ୍ଗ, ମୁଣ୍ଡା, ପାଣ, ହାଡ଼ି, ଡମ, ତଅଁଳା, ଖଇରା ଓ ଚମାର ପ୍ରଭୃତି ଜନଜାତି ଥିଲେ । ଏମାନଙ୍କ ଧର୍ମଧାରଣାରେ ମୁଖ୍ୟତଃ ସ୍ତମ୍ଭ ଉପାସନା ଆଦିମ ଯୁଗରୁ ପ୍ରଭାବ ବିସ୍ତାର କରି ରହିଥିଲା ଓ ରହିଅଛି । ମହାଭାରତ ଯୁଦ୍ଧ ସମୟରୁ ଭଞ୍ଜବଂଶୀୟ ରାଜାମାନେ ସେମାନଙ୍କ ଉପରେ ପ୍ରଭାବ ବିସ୍ତାର କରି ସମଗ୍ର ଓଡ୍ର ଦେଶରେ ରାଜତ୍ୱ କରି ଆସୁଥିଲେ । ଏହି ରାଜାମାନେ ହିଁ ମହାଭାରତ ବର୍ଣ୍ଣିତ ଓଡ୍ରରାଜ ଅଟନ୍ତି । ଅତଏବ ଭଂଜରାଜାମାନେ ମୌଳିକ ଭାବେ ଶୈବ ଧର୍ମାବଲମ୍ବୀ ଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ନାଗ ବା ମନସା ପୂଜା ଓ ବୌଦ୍ଧଧର୍ମ ଏମାନଙ୍କୁ ପ୍ରଭାବିତ କରିଥିଲା । ଏକ ସମୟରେ ସେମାନେ ବୌଦ୍ଧଧର୍ମଟକୁ ସଂପୂର୍ଣ୍ଣ ଆଦରି ନେଇଥିଲେ । ସେହି ଭଂଜବଂଶୀୟ ରାଜାମାନେ ନାଗ ସଂପ୍ରଦାୟର ଅନ୍ତର୍ଭୁକ୍ତ ବୋଲି ଗବେଷକମାନେ ନିର୍ଣ୍ଣୟ କରିଅଛନ୍ତି । ଖ୍ରୀଷ୍ଟୀୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀର ଅସନପାଟ ଶିଳାଲେଖରେ ଶତ୍ରୁଭଂଜ ନିଜକୁ ନାଗବଂଶୀୟ ବୋଲି ପରିଚୟ ଦେଇଛନ୍ତି । ବୁଦ୍ଧଦେବ ନାଗବଂଶୀୟ ଥିଲେ ବୋଲି ଭଂଜମାନେ ସେହି ଧର୍ମକୁ ଗ୍ରହଣ କରିନେବା ଅନ୍ୟତମ କାରଣ । ଏଥିରୁ ଦେଖାଯିବ ଯେ ବିଶାଳ ଓଡ୍ର ଭୂଖଣ୍ଡର ସାଧାରଣ ଜନତା ସ୍ତମ୍ଭ ଉପାସକ ଥିବାବେଳେ ସେମାନଙ୍କ ଉପରେ ରାଜତ୍ୱ କରୁଥିବା ଭଂଜବଂଶୀୟ ରାଜାମାନଙ୍କର ବୌଦ୍ଧଧର୍ମ ହିଁ ରାଜଧର୍ମ ଥିଲା ।

ଏକ ସମୟରେ ଓଡ୍ର ପରି ଏକ ବିଶାଳ ଭୂଖଣ୍ଡରେ ରାଜତ୍ୱ କରିବା ପାଇଁ ରାଜଧର୍ମ ଓ ପ୍ରଜାଧର୍ମ ମଧ୍ୟରେ ଏକ ସମନ୍ୱୟ ଆଣିବା ନିମନ୍ତେ ପ୍ରଶାସନକି ଆବଶ୍ୟକ ରହିଥିଲା । ଏଇଥିପାଇଁ ଭଞ୍ଜବଂଶୀୟ ରାଜାମାନେ ସାଧାରଣ ଜନତାଙ୍କଦ୍ୱାରା ପ୍ରଚଳିତ ସ୍ତମ୍ଭ ଉପାସନା ସହିତ ସ୍ୱୀୟ ବୌଦ୍ଧଧର୍ମ ମଧ୍ୟରେ ଧର୍ମଗତ ଓ ଶାସନଗତ ଐକ୍ୟ ଆଣି ତାହାରି ମାଧ୍ୟମରେ ସମନ୍ୱୟ ପ୍ରତିଷ୍ଠା କରିବା ନିମନ୍ତେ ଉଦ୍ୟମ କରିଥିଲେ । ଏହି ମୂର୍ତ୍ତି କଳ୍ପନାରେ ଖମ୍ବ ଉପାସକମାନଙ୍କର ସ୍ତମ୍ଭ, ନାଗବଂଶୀମାନଙ୍କର ସର୍ପମୁଖାକୃତିକୁ ନେଇ ଏକ ସମନ୍ୱିତ ମୂର୍ତ୍ତି କଳ୍ପନା କରାଯାଇ ତାହାଙ୍କୁ ବୁଦ୍ଧ ରୂପରେ ପୂଜା କରାଗଲା । ଏହିପରି ଭାବେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି କଳ୍ପନା ପ୍ରକାଶ ପାଇଲା । ଏହି ପରିପ୍ରେକ୍ଷୀରେ ନାଗ ଓ ଅନ୍ୟାନ୍ୟ ଜନଜାତିଙ୍କର ପ୍ରତୀକସ୍ୱରୂପ ଓଡ୍ରର ପ୍ରଭୁ ଜଗନ୍ନାଥ ଆବିର୍ଭୂତ ହୋଇଥିଲେ । ଜଗନ୍ନାଥଙ୍କର ସର୍ପାକୃତି ମୁଖମଣ୍ଡଳ, ଚକ୍ଷୁ ଓ ମୂର୍ତ୍ତି ଗଠନରେ ସର୍ପ ମୁଖାକୃତିର ପ୍ରତିବିମ୍ବ ତାହା ହିଁ ସୂଚିତ କରାଏ । ପ୍ରମାଣ ସ୍ୱରୂପ ଆଜି ପର୍ଯ୍ୟନ୍ତ ନବକଳେବର ବେଳେ ଜଗନ୍ନାଥଙ୍କର ମୁଖମଣ୍ଡଳ ନିର୍ମାଣ କରିବା ସମୟରେ ସର୍ପମୁଖର ପ୍ରତିବିମ୍ବକୁ ଅବଲମ୍ବନ କରିବାର ଏକ ନିର୍ଦ୍ଦିଷ୍ଟ ବିଧି ପାଳନ କରାଯାଇଥାଏ ଓ ସେଇଥିପାଇଁ ସେହି ସମୟରେ ବାସ୍ତୁପୂଜା (ଅଷ୍ଟକୁଳ ନାଗ ଓ ନାଗୁଣୀ ପୂଜା)ର ବିଧି ମଧ୍ୟ ରକ୍ଷା କରାଯାଇଆସୁଅଛି । ଇଂରାଜୀ ପର୍ଯ୍ୟଟକ ବ୍ରୁଟନ ୧୬୩୩ ଖ୍ରୀଷ୍ଟାବ୍ଦ ନଭେମ୍ବର ୫ ତାରିଖରେ ଯେତେବେଳେ ଜଗନ୍ନାଥ ମୂର୍ତ୍ତି ଦେଖିଲେ, ସେତେବେଳେ ତାହାକୁ ଜଗନ୍ନାଥ ମୂର୍ତ୍ତିର ଗଠନ ଶୈଳୀ ଏକ ସର୍ପ ଫଣାଯୁକ୍ତ ସର୍ପପରି ଦୃଶ୍ୟମାନ ହୋଇଥିଲା । ଏକଥା ସେ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କରିଛନ୍ତି ।

ଜଗନ୍ନାଥଙ୍କ କଳେବରକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ତାହା ଏକ ସର୍ପ ମୁଖମଣ୍ଡଳର ପ୍ରତିବିମ୍ବ ହୋଇଥିବାସ୍ଥଳେ ମୁଖମଣ୍ଡଳ ତଳେ ରହିଥିବା ଗଣ୍ଡି ଶବର ଓ ଅନ୍ୟାନ୍ୟ ଜନାଜାତିମାନଙ୍କଦ୍ୱାରା ପୂଜିତ ଖମ୍ବପୂଜାର ପ୍ରତୀକ ସ୍ୱରୂପ ରହିଅଛି । ମୂର୍ତ୍ତି କଳ୍ପନାରେ ଖବର ଓ ଅନ୍ୟାନ୍ୟ ଜନଜାତିମାନଙ୍କର ଖମ୍ବ ବା ଖମ୍ବେଶ୍ୱରୀ ପୂଜା ସହିତ ନାଗ ବଂଶର ଲାଞ୍ଛନ ସର୍ପର ମୁଖମଣ୍ଡଳର ସମନ୍ୱୟ ରକ୍ଷା କରାଯାଇ ଯେଉଁ ସଂପୂର୍ଣ୍ଣ ଜଗନ୍ନାଥ ମୂର୍ତ୍ତି ଗଠନ କରାଗଲା, ତାହା ବସ୍ତୁତଃ ଓଡ୍ରଦେଶର ଦୁଇ ପ୍ରଧାନ ଅଧିବାସୀ ନାଗ ଓ ଆଦିମ ଅଧିବାସୀମାନଙ୍କର ଐକ୍ୟର ପ୍ରତୀକ । ଏହି ସମନ୍ୱୟର ପ୍ରକ୍ରିୟାରେ ପରୀକ୍ଷାମୂଳକ ଭାବରେ ପ୍ରଥମାବସ୍ଥାରେ ସମ୍ଭବତଃ ଆଦିବାସୀମାନଙ୍କଦ୍ୱାରା ପୂଜିତ ଖମ୍ବ ଓ ନାଗ ସଂପ୍ରଦାୟର ଲାଞ୍ଛନ ସର୍ପକୁ ଏକତ୍ର ରଖି ପୂଜା ଆରାଧନା କରିବାର ଉଦ୍ୟମ କରାଯାଇଥିଲା । ଉଦାହରଣ ସ୍ୱରୂପ- ହିନ୍ଦୋଳର ଚିଉଳପୁର ଗ୍ରାମର ଦଶଖମ୍ବ ପୀଢ଼କୁ ଗ୍ରହଣ କରାଯାଇପାରେ । ଏହି ପୀଢ଼ଟି ମୌଳିକ ଭାବେ ଏକ ସ୍ତମ୍ଭ ଉପାସନା ପୀଠ ହୋଇଥିଲେ ମଧ୍ୟ ତଳମୂଳର ଦଶଖମ୍ବ ପୀଢ଼ରୁ ସର୍ପବିଗ୍ରହ ସ୍ଥାନାନ୍ତରିତ କରି ଚିଉଳପୁରଠାରେ ଖମ୍ବ ସହିତ ଏକତ୍ର ପୂଜା କରାଯାଇଥିଲା । ମାତ୍ର ତାହା ମଧ୍ୟ ଗ୍ରହଣଯୋଗ୍ୟ ନହେବାରୁ ଖମ୍ବ ଓ ସର୍ପ ମୁଖାକୃତିକୁ ନେଇ ଏକ ସମନ୍ୱିତ ମୂର୍ତ୍ତି କଳ୍ପନା କରାଗଲା । ଏହିପରି ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତି କଳ୍ପନା ନାଗବଂଶୀ ବୌଦ୍ଧଧର୍ମାବଲମ୍ବୀମାନଙ୍କ ଦ୍ୱାରା ହିଁ ସମ୍ଭବପର ହୋଇପାରିଥିଲା । ଏହି ନାଗବଂଶୀ ବୌଦ୍ଧଧର୍ମାବଲମ୍ବୀମାନେ ଏହିପରି ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତିର କଳ୍ପନା ମାଧ୍ୟମରେ ନାଗ ଓ ଆଦିମ ଅଧିବାସୀମାନଙ୍କ ମଧ୍ୟରେ ଭାଗବତ ଓ ଧର୍ମଗତ ଐକ୍ୟ ପ୍ରତିଷ୍ଠା କରି ଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ପୂଜା କରୁଥିଲେ । ଏହି ମୂର୍ତ୍ତି କଳ୍ପନାରେ ସ୍ତମ୍ଭ ଉପାସନାର ପ୍ରତୀକସ୍ୱରୂପ ମୁଖମଣ୍ଡଳ ତଳେ ଏକ ବୃକ୍ଷର ଗଣ୍ଡି ବା ଖମ୍ବ ରହିଥିବାରୁ ତାହା ସ୍ତମ୍ଭ

ଜଗନ୍ନାଥଙ୍କ କଳେବରକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ତାହା ଏକ ସର୍ପ ମୁଖମଣ୍ଡଳର ପ୍ରତିବିମ୍ବ ହୋଇଥିବାସ୍ଥଳେ ମୁଖମଣ୍ଡଳ ତଳେ ରହିଥିବା ଗଣ୍ଡି ଶବର ଓ ଅନ୍ୟାନ୍ୟ ଜନାଜତିମାନଙ୍କଦ୍ୱାରା ପୂଜିତ ଖମ୍ବପୂଜାର ପ୍ରତୀକ ସ୍ୱରୂପ ରହିଅଛି ।





ଉପାସକ ସାଧାରଣ ଜନତାଙ୍କ ନିକଟରେ ସଂପୂର୍ଣ୍ଣ ଗ୍ରହଣଯୋଗ୍ୟ ହୋଇପାରିଥିଲା । ଏହି ସମନ୍ୱୟର ପ୍ରକ୍ରିୟାରେ ସ୍ତମ୍ଭ ଉପାସକ ଆଦିମ ଅଧିବାସୀ ତଥା ଶବରମାନଙ୍କ ଆରାଧ୍ୟ ଦେବତା ଜଗନ୍ତଙ୍କ ସହିତ ନାଥଧର୍ମାବଲମ୍ବୀ ଓ ନାଗବଂଶୀମାନଙ୍କର ଏକ ସମନ୍ୱୟ ରକ୍ଷା କରିବା ପାଇଁ ଜଗନ୍ନାଥ ଶବ୍ଦର ପରିକଳ୍ପନା କରାଗଲା । ସେମାନଙ୍କର ଏହି ସମନ୍ୱୟ ରକ୍ଷାକାରୀ ମୂର୍ତ୍ତିକଳ୍ପନା ଓ ଜଗନ୍ନାଥ ନାମକରଣ ଓଡ୍ର ଜନଜାତିମାନଙ୍କୁ ସମଗ୍ର ପୃଥିବୀରେ ଏକ ଐକ୍ୟବଦ୍ଧ ଜାତି ରୂପେ ଚିହ୍ନିତ ଓ ଉପସ୍ଥାପନ କରାଇବା ସଂଗେସଂଗେ ଜଗନ୍ନାଥରୂପୀ ବୁଦ୍ଧଙ୍କୁ ସର୍ବଜନମାନ୍ୟ ରାଷ୍ଟ୍ର ଦେବତାର ସ୍ୱୀକୃତି ଓ ସମ୍ମାନ ଆଣି ଦେଇଥିଲା । ଏହି ସ୍ୱୀକୃତିର ମୂଳଦୁଆ ଏତେ ବ୍ୟାପକ ଓ ଦୃଢ଼ଭାବରେ ସଂଗଠିତ ହୋଇପାରିଥିଲା ଯେ ତାହା ସମଗ୍ର ଓଡ୍ର ଜନଜାତିଙ୍କୁ ଐକ୍ୟବଦ୍ଧ ଭାବେ ଜଗନ୍ନାଥଙ୍କ ନାମରେ ପ୍ରାଣପାତ କରିବା ପାଇଁ ପ୍ରେରଣା ଯୋଗାଇ ଆସୁଥିଲା । ଏହି ଭାବପ୍ରବଣତାର ସୁଯୋଗ ନେଇ ବିଭିନ୍ନ ରାଷ୍ଟ୍ରଶକ୍ତି ଜଗନ୍ନାଥ ନାମୋଚ୍ଚାରଣ ତଥା ଦ୍ୱାହି ମାଧ୍ୟମରେ ସାଧାରଣ ଲୋକଙ୍କ ମଧ୍ୟରେ ଏକ ଜାଗରଣ ସୃଷ୍ଟି କରି ଆବଶ୍ୟକ ସୈନ୍ୟ ସଂଗ୍ରହ ପୂର୍ବକ ନିଜକୁ କ୍ଷମତାଶାଳୀ କରିପାରୁଥିଲେ । ଅବସ୍ଥା ଏପରି ହୋଇଥିଲା ଯେ ଲୋକବଳ ଓ ସୈନ୍ୟଦଳ ସଂଗ୍ରହ କରି କ୍ଷମତା ବିସ୍ତାର କରିବା ପାଇଁ ଜଗନ୍ନାଥଙ୍କ ଦ୍ୱାହି ବା ନାମୋଚ୍ଚାରଣ ମୁଖ୍ୟ ମାଧ୍ୟମ ହୋଇଉଠିଥିଲା । ଏହା ହିଁ କ୍ଷମତା ଓ ପ୍ରଭାବ ବିସ୍ତାର କରିବାକୁ ଚାହୁଁଥିବା ବିଭିନ୍ନ ରାଷ୍ଟ୍ରଶକ୍ତିଙ୍କ ନିକଟରେ ଜଗନ୍ନାଥଙ୍କୁ ଅତ୍ୟନ୍ତ ଜନପ୍ରିୟ ଓ ଆକର୍ଷଣୀୟ କରି ଗଢ଼ି ତୋଳିଲା । ଏହି ଆକର୍ଷଣର ଫଳସ୍ୱରୂପ ସମସାମୟିକ ରାଷ୍ଟ୍ର ଶକ୍ତିକର୍ତ୍ତୃକ ଜଗନ୍ନାଥ ଓଡ୍ର ଦେଶର ବଣଜଙ୍ଗଲ ମଧ୍ୟରେ ଥିବା ନିଜର ଆସ୍ଥାନରୁ ସ୍ଥାନାନ୍ତରିତ ହୋଇ ରାଷ୍ଟ୍ରଶକ୍ତିର ପୃଷ୍ଠପୋଷକତାରେ ପ୍ରଶାସନିକ କେନ୍ଦ୍ରର ସମୀପବର୍ତ୍ତୀ ଅଞ୍ଚଳରେ ଅଧିଷ୍ଠିତ ହୋଇ ରହିଲେ । ଫଳସ୍ୱରୂପ ଏପରି ହେଲା, ଯେଉଁ ଜଗନ୍ନାଥ ମୂଳତଃ ସମଗ୍ର ଓଡ୍ରଦେଶର ଜନଜାତିଙ୍କ ମଧ୍ୟରେ ଧର୍ମଗତ ଓ ସାମାଜିକ ଐକ୍ୟ ଆଣିବା ପାଇଁ ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ଦ୍ୱାରା ପରିକଳ୍ପିତ ଓ ପ୍ରତିଷ୍ଠିତ ହୋଇଥିଲେ ସେ ବିଭିନ୍ନ ରାଷ୍ଟ୍ରଶକ୍ତିର କ୍ଷମତା ପ୍ରଲୋଭନର ଶିକାର ହୋଇ ସୈନ୍ୟ ସଂଗ୍ରହ ଓ ଲୋକବଳ ମାଧ୍ୟମରେ କ୍ଷମତା ଓ ପ୍ରଭାବ ବିସ୍ତାରର ଏକ ମାଧ୍ୟମ ହୋଇ ଗଢ଼ି ଉଠିଲେ ।

ଜଗନ୍ନାଥଙ୍କ ନାମୋଚ୍ଚାରଣ ପ୍ରଥମଥର ପାଇଁ ଆମେ ଇନ୍ଦ୍ରଭୂତି (ଖ୍ରୀଷ୍ଟୀୟ ୭୧୭)ଙ୍କ 'ଜ୍ଞାନସିଦ୍ଧି' ଗ୍ରନ୍ଥରୁ ପାଇଥାଉଁ । ସେଥିରେ ସେ ଜଗନ୍ନାଥଙ୍କୁ ଭଗବାନ ବୁଦ୍ଧ ରୂପରେ ସ୍ତୁତିଗାନ କରିଅଛନ୍ତି ।

୧. ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜନ-ବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ
(ଜ୍ଞାନସିଦ୍ଧି, ପ୍ରଥମ ସର୍ଗ, ପ୍ରଥମ ଶ୍ଳୋକ)

୨. ସର୍ବଦଂ ସର୍ବସତ୍ୱେ।ଯଃ ସର୍ବଜ୍ଞଂ ବରବଜିନଂ
ଭକ୍ତ୍ୟାହଂ ସର୍ବଭାବେନ ବକ୍ଷେ ତତ୍ ସାଧନଂ ପରମ୍ ।
(ଏଜନ୍- ପ୍ରଥମ ସର୍ଗ, ଦ୍ୱିତୀୟ ଶ୍ଳୋକ)

୩. ସଃ ଗୁରୁ ଶିଷ୍ୟ ସଂଗ୍ରାହୀ ସର୍ବ ବୁଦ୍ଧାନୁକାରକଃ
ଇତ୍ୟୁବାଚ ଜଗନ୍ନାଥୋ ନାନୌ ବୈର୍ଗୁରବଃ ସ୍ମୃତାଃ ।
(ଏଜନ- ପ୍ରଥମ ସର୍ଗ, ୨୭ ଶ୍ଳୋକ)

୪. ତାନ୍ ପ୍ରଯୁକ୍ତା ଜଗନ୍ନାଥୈଃ ବଜ ସତ୍ୱ ବିଭାବନୈଃ
ଭୁଜବର୍ଣ୍ଣ ସମାଯୁକ୍ତ ମୁଦ୍ରାମଣ୍ଡଳ କୈସ୍ତଥା ।
(ଏଜନ- ପ୍ରଥମ ସର୍ଗ, ୯୨ ଶ୍ଳୋକ)

୫. ଅତଏବ ଜଗନ୍ନାଥା ବାଲାନାଂ ପ୍ରତିବୋଧନେ
ନିବର୍ଣ୍ଣଂ ଦର୍ଶୟନ୍ତ୍ୟେବ ରୂପସ୍ୟାନିତ୍ୟଦର୍ଶକାଃ ।
(ଏଜନ୍- ଦ୍ୱିତୀୟ ସର୍ଗ, ୨୮ ଶ୍ଳୋକ)

୬. ସର୍ବଜ୍ଞଃ ସର୍ବଦର୍ଶୀଂଚ ସର୍ବଲୋକାର୍ଥକାରକଃ
ତତ୍ର ତତ୍ର ଜଗନ୍ନାଥୈଃ ଦର୍ଶିତଃ କରୁଣାମ୍ଭିଃ ।
(ଏଜନ- ପ୍ରଥମସର୍ଗ, ୮ ଶ୍ଳୋକ)

ବୁଦ୍ଧ ଦେବ ନିଜର ଦେହାବସାନ ବେଳେ ସ୍ୱୟଂ ନିଜକୁ ଜଗନ୍ନାଥ ବୋଲି ଅଭିହିତ କରିଅଛନ୍ତି । ଜଗନ୍ନାଥ କଥାଟି ବୁଦ୍ଧଙ୍କ ନିଜ ଉକ୍ତି । ବୁଦ୍ଧ ହେଲାବେଳେ ଓ ଦେହତ୍ୟାଗ କଲାବେଳେ ସେ କହି ପକାଇଥିଲେ, 'ମୁଁ ଜଗତର ନାଥ - ଜଗତର ଦୁଃଖ ନାଶର ଉପାୟ ମୁଁ ପାଇଛି । 'O' Universe ! I am thy Lord.' (୫) ଜଗନ୍ନାଥଙ୍କର ନାମୋଲ୍ଲେଖ ଆମେ ପ୍ରଥମ ଥର ପାଇଁ ଇନ୍ଦ୍ରଭୂତି (ଖ୍ରୀଷ୍ଟାବ୍ଦ ୭୧୭)ଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରୁ ପାଇଥାଉଁ । ଏହି ଗ୍ରନ୍ଥର ମଙ୍ଗଳାଚରଣରେ ଯେଉଁ ଜଗନ୍ନାଥଙ୍କର ନାମୋଲ୍ଲେଖ କରାଯାଇଅଛି, ସେ ଯେ ପୁରୀରେ ପୂଜା ପାଉଥିବା ଜଗନ୍ନାଥ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ମାତ୍ର କେତେକ ବ୍ୟକ୍ତି ଉଦ୍ଦେଶ୍ୟମୂଳକ ଭାବେ ଏକ ଭ୍ରମାତ୍ମକ ବ୍ୟାଖ୍ୟା ଛଳରେ ଇନ୍ଦ୍ରଭୂତିଙ୍କ ମଙ୍ଗଳାଚରଣରେ ବର୍ଣ୍ଣିତ ଜଗନ୍ନାଥ ଯେ ବର୍ତ୍ତମାନ ପୁରୀରେ ପୂଜା ପାଉଥିବା ଜଗନ୍ନାଥ ନୁହନ୍ତି, ତାହା ପ୍ରମାଣ କରିବାକୁ ଉଦ୍ୟମ କରିଛନ୍ତି । ଏଇଥିପାଇଁ ସେମାନେ ଯେଉଁସବୁ ଅବୋଧ ଯୁକ୍ତି ଉପସ୍ଥାପନ କରିଛନ୍ତି, ସେଥିରେ ଇନ୍ଦ୍ରଭୂତିଙ୍କ ମଙ୍ଗଳାଚରଣରେ ସ୍ଥାନ ପାଇଥିବା ଜଗନ୍ନାଥ କାହିଁକି ପୁରୀର ଜଗନ୍ନାଥ ହେବେ ନାହିଁ ସେ ବିଷୟରେ କିଛି

ଜଗନ୍ନାଥଙ୍କର ନାମୋଲ୍ଲେଖ ଆମେ ପ୍ରଥମ ଥର ପାଇଁ ଇନ୍ଦ୍ରଭୂତି (ଖ୍ରୀଷ୍ଟାବ୍ଦ ୭୧୭)ଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରୁ ପାଇଥାଉଁ । ଏହି ଗ୍ରନ୍ଥର ମଙ୍ଗଳାଚରଣରେ ଯେଉଁ ଜଗନ୍ନାଥଙ୍କର ନାମୋଲ୍ଲେଖ କରାଯାଇଅଛି, ସେ ଯେ ପୁରୀରେ ପୂଜା ପାଉଥିବା ଜଗନ୍ନାଥ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।





କହିନାହାନ୍ତି । 'ଜ୍ଞାନସିଦ୍ଧି'ର ମଙ୍ଗଳାଚରଣରେ ଯେଉଁ ଜଗନ୍ନାଥଙ୍କର ସ୍ତୁତିଗାନ କରାଯାଇଛି । ତାହାଙ୍କୁ ଇନ୍ଦ୍ରଭୂତି ଶ୍ରେଷ୍ଠ ଜୀନମାନଙ୍କଦ୍ୱାରା ଅର୍ଚ୍ଚିତ, ସକଳ ବୁଦ୍ଧମୟ ତଥା ସମଗ୍ର ଗଗନପବନ ମଣ୍ଡଳରେ ବ୍ୟାପୀ ରହିଥିବା ପରମବଜ୍ରୀ ରୂପେ କଳ୍ପନା କରି ନିଜର ପରମ ଉପାସ୍ୟ ଦେବତା ରୂପେ ଗ୍ରହଣ କରିଛନ୍ତି । ଜଗନ୍ନାଥଙ୍କୁ ଏହି ଭାବରେ କଳ୍ପନା କଲାବେଳେ ସେ ବସ୍ତୁତଃ ବୁଦ୍ଧ ରୂପୀ ପରମବଜ୍ରୀ ଜଗନ୍ନାଥଙ୍କୁ ହିଁ ତାହାଙ୍କ ମଙ୍ଗଳାଚରଣରେ ସ୍ତୁତି କରିଛନ୍ତି । କେତେକ ମୁଷ୍ଟିମେୟ ସମାଲୋଚକ ନିଜର ଅଜ୍ଞତାରୁ ଏହି ଭାବାର୍ଥକୁ ବୁଝିନପାରି ଜଗନ୍ନାଥ ଶବ୍ଦଟି ବିଶେଷଣ ରୂପେ ବ୍ୟବହୃତ ହୋଇଛି ବୋଲି ଯୁକ୍ତି କରିଛନ୍ତି । ମାତ୍ର ପ୍ରକୃତପକ୍ଷେ ଅନୁଧ୍ୟାନ କଲେ ଦେଖାଯିବ ଯେ ମଙ୍ଗାଚରଣରେ ଯେଉଁସବୁ ବର୍ଣ୍ଣନା ଦିଆଯାଇଅଛି, ତାହା ଜଗନ୍ନାଥଙ୍କର ବିଶେଷ । କିନ୍ତୁ ଉଦ୍ଦେଶ୍ୟମୂଳକ ଭାବେ ଏଠାରେ ଠିକ୍ ବିପରୀତ ଅର୍ଥ ଦିଆଯାଇଅଛି । ପ୍ରକୃତ ଭାବାର୍ଥ ଏପରି ହେବା ଉଚିତ, 'ଯିଏ ଶ୍ରେଷ୍ଠ ଜୀନମାନଙ୍କଦ୍ୱାରା ଅର୍ଚ୍ଚିତ, ଯିଏ ସର୍ବବୁଦ୍ଧମୟ, ଯାହାଙ୍କ ସିଦ୍ଧି ସମଗ୍ର ଗଗନ ପବନ ପରିବ୍ୟାପ୍ତ, ଯିଏ ସବୁ କିଛି ଜାଣନ୍ତି ଏବଂ ଦାନ କରନ୍ତି, ଯିଏ ସର୍ବସତ୍ତ୍ୱରେ ପ୍ରକାଶିତ, ସର୍ବଜ୍ଞ, ଶ୍ରେଷ୍ଠବଜୀ - ସେହି ଜଗନ୍ନାଥଙ୍କୁ ମୁଁ (ଇନ୍ଦ୍ରଭୂତି) ଭକ୍ତି ସହକାରେ ପ୍ରଣିପାତ କରୁଛି । ଏଥିରୁ ବୁଝାଯିବ ଯେ ଜଗନ୍ନାଥ ଶବ୍ଦଟିକୁ ଏକ ନାମବାଚକ ବିଶେଷ୍ୟ ରୂପେ ଏଠାରେ ପ୍ରୟୋଗ କରାଯାଇଛି । ଏହାକୁ ବିଶେଷଣ ରୂପେ ବ୍ୟାଖ୍ୟା କରିବା ଚରମ ନିର୍ବୋଧତାର ପରିଚାୟକ । ସେହିପରି କେତେକ ସମାଲୋଚକ ଏଠାରେ ଜଗନ୍ନାଥଙ୍କୁ ଇନ୍ଦ୍ରଭୂତିଙ୍କର ଗୁରୁ ରୂପେ ଗ୍ରହଣ କରିବାପାଇଁ ଯୁକ୍ତି ଉପସ୍ଥାପନା କରିଛନ୍ତି । ମାତ୍ର ତାହା ସଂପୂର୍ଣ୍ଣ ଭ୍ରମାତ୍ମକ ଓ ଭିତ୍ତିହୀନ । ଯେଉଁମାନେ କେବଳ ଏହିଭଳି ଯୁକ୍ତି ବାଢ଼ିଛନ୍ତି, ସେମାନେ ଟାଣି ଓଟାରି ଜବରଦସ୍ତ ଏହାକୁ ପ୍ରମାଣ କରିଛନ୍ତି । ଶ୍ଳୋକଗୁଡ଼ିକର ବ୍ୟାଖ୍ୟା କରିବାକୁ ଯାଇ ଡକ୍ଟର କରୁଣା କର ଜଗନ୍ନାଥଙ୍କୁ ପ୍ରମାଣ କରିଛନ୍ତି । ଶ୍ଳୋକଗୁଡ଼ିକର ବ୍ୟାଖ୍ୟା କରିବାକୁ ଯାଇ ଡକ୍ଟର କର ଉଲ୍ଲେଖ କରିଛନ୍ତି ଯେ 'ଜଗନ୍ନାଥ ଜୀନ ଶ୍ରେଷ୍ଠ ଦ୍ୱାରା ପୂଜିତ, ସର୍ବବୁଦ୍ଧରୂପୀ, ସିଦ୍ଧି ବ୍ୟାପୀ ଓ ଆକାଶତୁଲ୍ୟ ଅଟନ୍ତି । ସେ ସମସ୍ତ ପ୍ରାଣୀଙ୍କୁ ସବୁଦାନ କରନ୍ତି । ସେ ସର୍ବଜ୍ଞ ଓ ବଜ୍ରଯାନୀଙ୍କ ମଧ୍ୟରେ ଶ୍ରେଷ୍ଠ । ମୁଁ ଭକ୍ତିରେ ସେହି ଜଗନ୍ନାଥଙ୍କୁ ପ୍ରଣାମ କରି ତାହାଙ୍କ ସାଧନାର ଉପାୟ କହୁଅଛି । ଏହି ଶ୍ଳୋକରେ କବି ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ଗ୍ରହଣ କରିଛନ୍ତି ।'(୬) ଲିଖିତ ପ୍ରମାଣ ଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କୁ ପ୍ରଥମେ ଏହି ଇନ୍ଦ୍ରଭୂତି ୭୧୭ ଖ୍ରୀଷ୍ଟାବ୍ଦରେ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ 'ସର୍ବବୁଦ୍ଧମୟ' ରୂପେ ପରିଚୟ କରାଇଅଛନ୍ତି ।'(୭)

ପ୍ରାଚୀନ କାଳରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଓଡ଼ିଆ କବିମାନେ ପୁରୀର ଜଗନ୍ନାଥଙ୍କୁ ବୁଦ୍ଧ ବା ବୌଦ୍ଧାବତାର ରୂପରେ ବର୍ଣ୍ଣନା କରି ଆସିଛନ୍ତି । ସାରଳାଦାସଙ୍କ 'ମହାଭାରତ', ବଳରାମ ଦାସଙ୍କ 'ଦାରୁବ୍ରହ୍ମ ଗୀତା', ଜଗନ୍ନାଥ ଦାସଙ୍କ 'ଦେଉଳତୋଳା', ଅଚ୍ୟୁତାନନ୍ଦ ଦାସଙ୍କ 'ଶୂନ୍ୟ ସଂହିତା' ଓ ଅନନ୍ତ ଦାସଙ୍କ 'ଗୁପ୍ତ ଗୀତା'ରେ ବୁଦ୍ଧରୂପୀ ଜଗନ୍ନାଥଙ୍କର ଉଲ୍ଲେଖ ରହିଛି । ଯେପରି-

'ବଉଦ୍ଧ ରୂପରେ କଳିକାଳାନ୍ତକ ସାଧୁ,
କୃତାନ୍ତକ ଦର୍ପଗଞ୍ଜ ଅଟ କୃପାନିଧି ।'
(ସାରଳା ମହାଭାରତ, ସଭାପର୍ବ, ପୃ.୨)

'ଷଷ୍ଠ ଦିବସ ଅନ୍ତରେଣ, ପାଦ ଯେ ପାଣି ହେଲା କ୍ଷୀଣ,
ବଉଦ୍ଧ ରୂପ ହେବାପାଇଁ, ପାଦ ପାଣି ଛାଡ଼ିଲେ ତହିଁ ।'
(ବଳରାମ ଦାସ - ଦାରୁବ୍ରହ୍ମ ଗୀତା)

'ସମୁଦ୍ରେ ମେଲିଣ ଦିଅ ପ୍ରଭୁ ଦେବ ରାଜା
କଳିଯୁଗେ ପାଇବେ ସେ ଦାରୁବ୍ରହ୍ମ ପୂଜା
ଠାକୁରେ ବୋଇଲେ ରାଜା ହୋଇଲୁକି ବାଇ
କଳିଯୁଗେ ବସିବୁ ବଉଦ୍ଧ ରୂପ ହୋଇ ।'
(ଜଗନ୍ନାଥ ଦାସ, ଦେଉଳତୋଳା)

'ନିଜ ବଂଶ ଘେନି ବଉଦ୍ଧ ରୂପରେ ନୀଳାଚଳେ ଅଛ ରହି ।'
(ଅଚ୍ୟୁତାନନ୍ଦ ଦାସ - ଶୂନ୍ୟ ସଂହିତା, ୧୫ ଅଧ୍ୟାୟ)

'ତହୁଁ ବଉଦ୍ଧ ରୂପ ଭଗବାନ । ରହିଲେ ପୁରୁଷୋତ୍ତମ ଭୁବନ
ବଉଦ୍ଧ ରୂପ ନୀଳଗିରି ମୋହି ।'
(ଅନନ୍ତ ଦାସ- ଗୁପ୍ତ ଗୀତା)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ଓଡ଼ିଶାବାସୀ ପୁରୀର ଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପରେ ବହୁ କାଳରୁ ଗ୍ରହଣ କରି ଆସିଛନ୍ତି । ସେଥିଲାଗି ଓଡ଼ିଶାର ଶ୍ରେଷ୍ଠ ଭକ୍ତକବି ଜୟଦେବ ବୁଦ୍ଧଙ୍କୁ ଦଶାବତାର ମଧ୍ୟରେ ଗ୍ରହଣ କରି ତାଙ୍କର ସ୍ତୁତିଗାନ କରିଛନ୍ତି । ଓଡ଼ିୟାନର ରାଜା ଇନ୍ଦ୍ରଭୂତି ସେହି ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ପ୍ରମାଣ କରିଥିବାରୁ ସେ ଓଡ଼ିଶାର ଲୋକଥିଲେ ବୋଲି ଅନୁମିତ ହୁଏ । ଓଡ଼ିଶାର ଏହି ବୌଦ୍ଧଧର୍ମର ପ୍ରଭାବ ନେପାଳ ଓ ତିବ୍ବତରେ ପଡ଼ିଥିଲା । ତେଣୁ ନେପାଳରେ ବୁଦ୍ଧଦେବ ଜଗନ୍ନାଥ ନାମରେ ପରିଚିତ ହୋଇଥାନ୍ତି ।

> ଓଡ଼ିଶାର ଏହି ବୌଦ୍ଧଧର୍ମର ପ୍ରଭାବ ନେପାଳ ଓ ତିବ୍ବତରେ ପଡ଼ିଥିଲା । ତେଣୁ ନେପାଳରେ ବୁଦ୍ଧଦେବ ଜଗନ୍ନାଥ ନାମରେ ପରିଚିତ ହୋଇଥାନ୍ତି ।

ଅନଙ୍ଗବଜ ଇନ୍ଦ୍ରଭୂତିଙ୍କର ଗୁରୁ ଥିଲେ । ତେଙ୍ଗର ଗ୍ରନ୍ଥରେ ସେ ଆଚାର୍ଯ୍ୟ, ଯୋଗୀ, ଯୋଗୀଶ୍ୱର, ଶ୍ରୀପାଦ ଓ ମହାଚାର୍ଯ୍ୟ ରୂପରେ ବର୍ଣ୍ଣିତ ହୋଇଛନ୍ତି । ତାଙ୍କ ରଚିତ 'ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି' ବରୋଦରୁ ପ୍ରକାଶିତ ହୋଇଛି । ସିଦ୍ଧାଚାର୍ଯ୍ୟ ଅନଙ୍ଗବଜ ମଧ୍ୟ ସେ ଗ୍ରନ୍ଥରେ ଜଗନ୍ନାଥଙ୍କର ଉପାସନାରେ କହିଛନ୍ତି -





'ସଦା ପରହିତ ସ୍ୟୈବ ଚର୍ଯ୍ୟୟା ନିଷ୍କାମ୍ୟଚେତସା
ପର୍ଯ୍ୟୁପାସ୍ୟୋ ଜଗନ୍ନାଥୋ ଗୁରୁଃ ସର୍ବାର୍ଥସିଦ୍ଧିଦଃ ।'(୮)

ଅର୍ଥାତ୍ ଯେଉଁ ଲୋକ ବା ଭକ୍ତ ସର୍ବଦା ପରହିତରେ ରତ, ସଂସାରର କାମନାଠାରୁ ଊର୍ଦ୍ଧ୍ୱରେ, ଯେଉଁମାନେ ଜଗନ୍ନାଥଙ୍କର ଉପାସକ ବା ସେବାରେ ରତ, ସେହିମାନଙ୍କ ପାଇଁ ହିଁ ଜଗନ୍ନାଥ ଗୁରୁସ୍ୱରୂପ ଏବଂ ସବୁପ୍ରକାରର କାମନା ପ୍ରଦାୟକ ବା ସିଦ୍ଧିଦାତା ଅଟନ୍ତି । ଅତଏବ ଚନ୍ଦ୍ରଭୂତିଙ୍କର ଗୁରୁ ଅନଙ୍ଗବଜ ମଧ୍ୟ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ସର୍ବାର୍ଥ ସିଦ୍ଧିଦାତା ପରମୋପାସ୍ୟ ଗୁରୁ ରୂପେ ପ୍ରଣତି ଜଣାଇଛନ୍ତି ।

କେତେକ ସମାଲୋଚକ ଉଦ୍ଦେଶ୍ୟମୂଳକ ଭାବେ ଯୁକ୍ତି କରିଥାନ୍ତି ଯେ ଜଗନ୍ନାଥ ଆଖ୍ୟାଟି ବିଭିନ୍ନ ସଂପ୍ରଦାୟର ବିବିଧ ଦେବତାଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଥାଏ । ମାତ୍ର ଏହା ସଂପୂର୍ଣ୍ଣ ମିଥ୍ୟା । ଜଗନ୍ନାଥ କହିଲେ କେବଳ ପୁରୀର ବୁଦ୍ଧ-ଜଗନ୍ନାଥଙ୍କୁ ହିଁ ବୁଝାଏ । ଏ ସଂପର୍କରେ ଐତିହାସିକ ସ୍ୱର୍ଗୀୟ କେଦାରନାଥ ମହାପାତ୍ରଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ତାହାଙ୍କ ମତରେ, 'Thus Jagannatha propitiated by Indrabhuti is no other than Jagnnatha at Puri, whose Buddhist origin is recognised in early Oriya and Bengali literature. So Jnanasidhi, which was written in cirea 717 AD, furnishes the earliest authentic evidence, so far available, regarding the antiquity of Jagannath at Puri, whose fame must have spread before the eight century.'(୯) ଇନ୍ଦ୍ରଭୂତି ଓ ତାହାଙ୍କ ଗୁରୁ ଅନଙ୍ଗବଜଙ୍କ ପୂର୍ବରୁ ଏଇ ଜଗନ୍ନାଥ ଶବ୍ଦଟି ଅନ୍ୟ କେଉଁଠାରେ ହେଲେ ବ୍ୟବହୃତ ହୋଇଥିବା କଥା ଦେଖିବାକୁ ମିଳେ ନାହିଁ । ଅନଙ୍ଗବଜ ଇନ୍ଦ୍ରଭୂତିଙ୍କର ଗୁରୁ ଥିଲେ ବୋଲି ଡକ୍ଟର କରୁଣାକର କର ଉଲ୍ଲେଖ କରିଛନ୍ତି ।(୧୦) କେତେକେ ଅନୁମାନ କରିଥାନ୍ତି ଯେ 'ଜଗନ୍ନାଥ' ନାମଧାରୀ କୌଣସି ସିଦ୍ଧ ସାଧକ ଇନ୍ଦ୍ରଭୂତିଙ୍କର ଗୁରୁଥିଲେ । ଏହା ସଂପୂର୍ଣ୍ଣ ମିଥ୍ୟା । ବଜ୍ରଯାନର ଇତିହାସରେ ଜଗନ୍ନାଥ ନାମଧାରୀ କୌଣସି ସିଦ୍ଧସାଧକର ନାମୋଲ୍ଲେଖ ନାହିଁ । କେତେକ ଯୁକ୍ତି କରନ୍ତି ଯେ ଇନ୍ଦ୍ରଭୂତିଙ୍କ ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥର ମଙ୍ଗଳାଚରଣରେ ଜଗନ୍ନାଥ ଶବ୍ଦଟି 'ଗୁରୁ' ଅର୍ଥରେ ବ୍ୟବହୃତ ହୋଇଛି । ଏହା ସଂପୂର୍ଣ୍ଣ ମିଥ୍ୟା ଓ ଉଦ୍ଭଟ ଯୁକ୍ତି । ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଏ ସଂପର୍କରେ ଆଲୋଚନା କରିବାକୁ ଯାଇ ଜ୍ଞାନସିଦ୍ଧିର ଜଗନ୍ନାଥ, ଜଗତ୍‌ସ୍ୱାମୀ, ଜଗତ୍‌ପତି ଓ ଜଗତ୍‌ଗୁରୁଙ୍କୁ ବୁଦ୍ଧ ଜଗନ୍ନାଥ ରୂପେ ଗ୍ରହଣ କରିଛନ୍ତି ।(୧୧) ଇନ୍ଦ୍ରଭୂତି ବା ତାହାଙ୍କର ଗୁରୁ ଅନଙ୍ଗବଜ୍ରଙ୍କର ଗୁରୁ ଜଗନ୍ନାଥ ନାମଧାରୀ କୌଣସି ବ୍ୟକ୍ତି ବା ସିଦ୍ଧସାଧକ ନଥିଲେ । ପୁରୀର ବୁଦ୍ଧ-ଜଗନ୍ନାଥ ଉଭୟ ଇନ୍ଦ୍ରଭୂତି ଏବଂ ଅନଙ୍ଗବଜ୍ରଙ୍କର ଉପାସ୍ୟ ଦେବତା ହିଁ ଥିଲେ । ତେଣୁ ଇନ୍ଦ୍ରଭୂତି ତାହାଙ୍କର ମଙ୍ଗଳାଚରଣରେ ଜଗନ୍ନାଥ ଶବ୍ଦଟି ଗୁରୁ ଅର୍ଥରେ ବ୍ୟବହାର କରିଛନ୍ତି ବୋଲି କହିବା ଅଯୌକ୍ତିକ । 'ଜଗନ୍ନାଥ' ନାମଟିର ଉତ୍ପତ୍ତି ସଂପର୍କରେ ଆଲୋଚନା କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଦାସ ଉଲ୍ଲେଖ କରିଅଛନ୍ତି, 'ଏଠାରେ ମନେ ରଖିବାକୁ ହେବ ଜଗନ୍ନାଥ କଥାଟି ବୁଦ୍ଧଙ୍କ ନିଜ ଉକ୍ତି ।' ବୁଦ୍ଧ ହେଲାବେଳେ ଓ ଦେହତ୍ୟାଗ କଲାବେଳେ ବୁଦ୍ଧ କହି ପକାଇଥିଲେ, 'ମୁଁ ଜଗତର ନାଥ - ଜଗତର ଦୁଃଖ ନାଶର ଉପାୟ ମୁଁ ପାଇଛି ।'(୧୨) ଏହିଦିନଠାରୁ ବୌଦ୍ଧ ଧର୍ମାବଲମ୍ବୀମାନେ ବୁଦ୍ଧଙ୍କ ଉପାସନା କଲାବେଳେ ତାହାଙ୍କୁ ଜଗନ୍ନାଥ ରୂପରେ ହିଁ ସମ୍ବୋଧିତ କରିଆସିଛନ୍ତି । ଏ ଦୃଷ୍ଟିରୁ 'ଜଗନ୍ନାଥ' କହିଲେ ବୁଦ୍ଧାବତାରକୁ ହିଁ ବୁଝାଏ । କାରଣ ବୁଦ୍ଧ ନିଜକୁ ନିଜେ ଜଗନ୍ନାଥ ରୂପେ ସମ୍ବୋଧିତ କରି ଆସୁଛନ୍ତି । ଏ ସଂପର୍କରେ ଆଲୋଚନା କରିବାକୁ ଯାଇ ଡକ୍ଟର ମହତାବ ମତବ୍ୟକ୍ତ କରିଅଛନ୍ତି, 'ବୁଦ୍ଧଙ୍କର ଅପର ନାମ ଜଗନ୍ନାଥ । ଏହା ପୁରାତନ ପାଲି ସାହିତ୍ୟ ଓ ନେପାଳରୁ ମିଳିଥିବା ତନ୍ତ୍ର ସାହିତ୍ୟରୁ ମଧ୍ୟ ମିଳେ । ଏଲୋରାର ପର୍ବତ ଖୋଦିତ ଗୋଟିଏ ବୌଦ୍ଧ ମନ୍ଦିରର ନାମ 'ଜଗନ୍ନାଥ' । 'ଜଗନ୍ନାଥ' ନାମର ମୂଳ ହେଉଛି ବୌଦ୍ଧ ।(୧୩)

> ଏଲୋରାର ପର୍ବତ ଖୋଦିତ ଗୋଟିଏ ବୌଦ୍ଧ ମନ୍ଦିରର ନାମ 'ଜଗନ୍ନାଥ' । 'ଜଗନ୍ନାଥ' ନାମର ମୂଳ ହେଉଛି ବୌଦ୍ଧ ।

ଡକ୍ଟର ମହତାବଙ୍କ ବହୁପୂର୍ବରୁ ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ ଏ ସଂପର୍କରେ ମତ ଦେବାକୁ ଯାଇ କହିଛନ୍ତି, 'ବୌଦ୍ଧଧର୍ମର ପରାଭବ ଓ ହିନ୍ଦୁଧର୍ମର ପୁନଃ ସଂସ୍କାର ଓ ଟେକ ବଢ଼ାଇବା ସକାଶେ ବୌଦ୍ଧଙ୍କ ମାଲମସଲାରୁ ଯେ ଜଗନ୍ନାଥ ଦେବଙ୍କର ସୃଷ୍ଟି ହୋଇଛି ଏଥିରେ କୌଣସି ସନ୍ଦେହ ନାହିଁ ।(୧୪) ଏହିସବୁ ଆଲୋଚନାମାନଙ୍କରୁ ଦେଖାଯିବ ଯେ ଇନ୍ଦ୍ରଭୂତି ତାହାଙ୍କର ମଙ୍ଗଳାଚରଣରେ ଯେଉଁ ଜଗନ୍ନାଥ ଶବ୍ଦର ପ୍ରୟୋଗ କରିଅଛନ୍ତି ତାହା ପୁରୀର ଜଗନ୍ନାଥଙ୍କୁ ହିଁ ବୁଝାଏ । କଦାପି ଅନ୍ୟ କୌଣସି ଦେବଦେବୀ, ଦୀକ୍ଷାଗୁରୁ ବା ସିଦ୍ଧସାଧକଙ୍କୁ ବୁଝାଏ ନାହିଁ । ଏହି ଇନ୍ଦ୍ରଭୂତିଙ୍କ 'ବଜ୍ରଯାନ' ତାଙ୍କ ଭଉଣୀ ଲକ୍ଷ୍ମୀଙ୍କରାଙ୍କ 'ସହଜଯାନ'ର ପ୍ରଭାବରେ ସେ ସମୟରେ ପୁରୀ ଜଗନ୍ନାଥ ମନ୍ଦିର ଗାତ୍ରରେ ମିଥୁନ ମୂର୍ତ୍ତି, ନଗ୍ନ ଚିତ୍ରକଳା ପ୍ରଭୃତି ଖୋଦିତ ହୋଇଥିଲା ।(୧୫) ଏଠାରେ ଉଲ୍ଲେଖନୀୟ ଯେ ଇନ୍ଦ୍ରଭୂତି ଓ ତାହାଙ୍କର ଗୁରୁ ଅନଙ୍ଗବଜଙ୍କର ରଚନାବଳୀରୁ ସେମାନେ ଯେ ଜଗନ୍ନାଥଙ୍କର ଉପାସକ ଥିଲେ, ତାହା ସ୍ପଷ୍ଟ ଭାବେ ଜଣାଯାଏ । ଅନଙ୍ଗବଜଙ୍କ ଗୁରୁ ପଦ୍ମବଜ କମ୍ବଳପାଦଙ୍କର ସମସାମୟିକ ଥିଲେ । ଏହି କମ୍ବଳପାଦ ଓଡ଼ିଭିସା ବା ଉଡ୍ଡୀୟାନର ବାସିନ୍ଦା ଥିଲେ ।(୧୬) ଇନ୍ଦ୍ରଭୂତି ଓ ଅନଙ୍ଗବଜ ଜଗନ୍ନାଥଙ୍କର ଉପାସକ ଥିବାରୁ ତାହାଙ୍କ ଗୁରୁ ପଦ୍ମବଜ ଓ କମ୍ବଳପାଦ ଜଗନ୍ନାଥଙ୍କର ଉପାସକ ହୋଇଥିବା ସମ୍ଭବପର । ଓଡ଼ିଭିସା ବା ଓଡ୍ର ଭୂମି ଥିଲା ଜଗନ୍ନାଥଙ୍କର ଆଦିପୀଠ ଭୂମି । ଏକଥା ପୂର୍ବରୁ ଆଲୋଚିତ ହୋଇଛି ।





'ଜଗନ୍ନାଥ' ଶବ୍ଦଟିର ପ୍ରାଚୀନତା ସଂପର୍କରେ ଚିନ୍ତା କଲାବେଳେ ଆମକୁ ବଜ୍ରଯାନର ଇତିହାସ ଓ ତାହାର ପ୍ରାଚୀନତା ସଂପର୍କରେ ଚିନ୍ତା କରିବାକୁ ପଡ଼େ । କାରଣ 'ଜଗନ୍ନାଥ' ନାମର ପ୍ରୟୋଗ ପ୍ରଥମଥର ପାଇଁ ବଜ୍ରଯାନୀମାନେ କରିଥିବାରୁ ଓ ଜଗନ୍ନାଥଙ୍କୁ ନିଜର ଉପାସ୍ୟ ଦେବତା ରୂପେ ନିଜ ରଚନାଗୁଡ଼ିକରେ ସମ୍ବୋଧିତ କରିଥିବାରୁ ଜଗନ୍ନାଥ ଯେ ବଜ୍ରଯାନୀ ବୌଦ୍ଧ ଧର୍ମାବଲମ୍ବୀମାନଙ୍କର ପ୍ରଧାନ ଉପାସ୍ୟ ଦେବତା ଥିଲେ, ଏକଥା ନିଶ୍ଚିତ ରୂପେ କୁହାଯାଇପାରେ । ବଜ୍ରଯାନୀମାନେ ଶୂନ୍ୟବାଦରେ ବିଶ୍ୱାସ କରୁଥିବାରୁ ଏହି ଶୂନ୍ୟବାଦର ପ୍ରତୀକ ସ୍ୱରୂପ ପାଣିପାଦଶୂନ୍ୟ ଜଗନ୍ନାଥଙ୍କର ମୂର୍ତ୍ତିକୁ ନିଜର ଉପାସ୍ୟ ଦେବତା ରୂପେ ଗ୍ରହଣ କରିଥିଲେ । ସେମାନେ ଏହି ଶୂନ୍ୟବାଦର ପ୍ରତୀକ ଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପରେ ଗ୍ରହଣ କରି ଉପାସନା କରି ଆସୁଥିଲେ ।

ଓଡ଼ିଶାର ପ୍ରାଚୀନ କବିମାନେ ଜଗନ୍ନାଥଙ୍କୁ ଶୂନ୍ୟର ପ୍ରତୀକ ବୁଦ୍ଧ ମୂର୍ତ୍ତି ରୂପେ ଗ୍ରହଣ କରିଛନ୍ତି ଏବଂ ତାହାଙ୍କୁ ଅବତାରୀ ଅର୍ଥାତ୍ ପ୍ରଧାନ ଦେବତା ରୂପେ ଚିତ୍ରଣ କରିଛନ୍ତି । ଏହିସବୁ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ବଜ୍ରଯାନ ପ୍ରବର୍ତ୍ତନର ଇତିହାସ ସହିତ ଜଗନ୍ନାଥଙ୍କର ନାମକରଣ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ବଜଯାନ ପ୍ରବର୍ତ୍ତନର ସମୟକାଳ ଠିକ୍ ଭାବେ ଜଣାନଥିଲେ ମଧ୍ୟ ତାହା ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଶେଷଭାଗ କିମ୍ବା ତା' ପୂର୍ବବର୍ତ୍ତୀ ବୋଲି କୁହାଯାଇପାରେ । ଏହା ପୂର୍ବରୁ ଜଗନ୍ନାଥ ଶବ୍ଦଟିର ପ୍ରୟୋଗ ଅନ୍ୟ କୌଣସି ସାହିତ୍ୟ ବା ଧର୍ମଶାସ୍ତ୍ରଗୁଡ଼ିକରେ ହୋଇନଥିବାରୁ ନିଶ୍ଚିତ ରୂପେ ଏପରି ଧାରଣା କରାଯାଇପାରେ ଯେ ଜଗନ୍ନାଥଙ୍କ ନାମକରଣ ବଜଯାନୀମାନଙ୍କଦ୍ୱାରା ଉପରୋକ୍ତ ସମୟକାଳ ମଧ୍ୟରେ ହିଁ ହୋଇଥିଲା । ବଜଯାନୀମାନେ ସେହି ସମୟକାଳ ମଧ୍ୟରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରି ତାହାଙ୍କୁ ପରମବଜୀ ବୌଦ୍ଧାବତାର ରୂପେ ପୂଜା ଉପାସନା କରି ଆସୁଥିଲେ ।

ବଜଯାନର ପ୍ରବକ୍ତା ଇନ୍ଦ୍ରଭୂତି ଓଡ୍‌ଡୀୟାନର ରାଜାଥିଲେ ବୋଲି ଡକ୍ଟର ପି. କର୍ଦ୍ଦିୟେଙ୍କ ତେଙ୍ଗୁରସ୍ଥିତ ବୌଦ୍ଧ ତନ୍ତ୍ରର କ୍ୟାଟଲଗରୁ ଜଣାପଡ଼େ ।(୧୭) ବୌଦ୍ଧ ତାନ୍ତ୍ରିକ ବଜ୍ରଯାନରେ ଓଡିୟାନ ବା ଓଡ୍‌ଡୀୟାନ ଆଦିପୀଠ ଭାବେ ଗୃହୀତ ହେଉଥିଲା । ପାଗ୍-ସାମ୍-ଜୋନ୍-ଜାଙ୍ଗ'ରେ ଉଲ୍ଲେଖ ଅଛି ଯେ ଓଡ୍ଡୀୟାନରୁ ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା ।(୧୮) ଉପରୋକ୍ତ ଆଲୋଚନାମାନଙ୍କରୁ ଦେଖାଯିବ ଯେ ବଜଯାନୀମାନଙ୍କର ଆଦିପୀଠ ଉଡ୍ଡୀୟାନ ଥିଲା ଓ ଇନ୍ଦ୍ରଭୂତି ସେହି ରାଜ୍ୟର ରାଜା ଥିଲେ । ଏହି ଉଡ୍ଡୀୟାନ୍ ସମ୍ଭବତଃ ଜଗନ୍ନାଥଙ୍କ ମୂର୍ତ୍ତି କଳ୍ପନା ଓ ତା'ର ପ୍ରତିଷ୍ଠାର ଆଦିପୀଠ ହୋଇ ରହିଥିଲା । ଏ ସଂପର୍କରେ ଆଲୋଚନା କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଦାସ ମତବ୍ୟକ୍ତ କରିଛନ୍ତି- ଖ୍ରୀଷ୍ଟୀୟ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀ ବେଳକୁ ମୟୂରଭଞ୍ଜ, କେନ୍ଦୁଝର, ସମ୍ବଲପୁର, ସୋନପୁର, ପାଟଣା ଓ ଘୁମୁସର ତଥା ଅନ୍ୟାନ୍ୟ ସୀମାନ୍ତ ଅଞ୍ଚଳକୁ ଉଡ୍ଡୀୟାନ କୁହାଯାଉଥିଲା । ଏଠାରେ ଶବରମାନେ ହିଁ ବହୁସଂଖ୍ୟାରେ ବସତି ସ୍ଥାପନ କରିଥିଲେ । ସେମାନେ ଆବହମାନ କାଳରୁ ନିମ୍ବକାଠ ନିର୍ମିତ ଶବରୀ-ନାରାୟଣ ମୂର୍ତ୍ତି ଉପାସନା କରି ଆସୁଥିଲେ । ବୋଧହୁଏ ଏହିମାନେ ପୁରୀ ଜଗନ୍ନାଥଙ୍କୁ ନିମ୍ବକାଠରେ ଗଢ଼ି ନିଜର କରି ରଖିଥିଲେ ।'(୧୯)

ପଣ୍ଡିତ ନୀଳକଣ୍ଠ ଦାସ ଯେଉଁ ଅନୁମାନ କରିଅଛନ୍ତି, ତାହାର ପ୍ରକୃତ ଅର୍ଥ ଏପରି ହୋଇପାରେ ଯେ ଉଡ୍ଡୀୟନର ଶବରମାନେ ନିମ୍ବକାଠରେ ପ୍ରସ୍ତୁତ ଦାରୁଖମ୍ବର ଉପାସନା କରୁଥିଲେ । ବଜଯାନୀମାନେ ସଂଖ୍ୟାବହୁଳ ଏହି ଶବରମାନଙ୍କ ମଧ୍ୟରେ ନିଜ ଧର୍ମମତର ପ୍ରଚାର କରିବା ପାଇଁ ସେମାନଙ୍କଦ୍ୱାରା ପୂଜିତ ଏହି ଦାରୁଖମ୍ବକୁ ଜଗନ୍ନାଥ ଆଖ୍ୟା ଦେଇ ପରମବଜୀ ରୂପେ ଗ୍ରହଣ କରିନେଇଥିଲେ । ଏହିଭଳି ଭାବେ ଶବର ଜାତି ଓ ଉପଜାତିମାନଙ୍କ ମଧ୍ୟରେ ପାରମ୍ପରିକ ଭାବରେ ଯେଉଁ ଦାରୁଖମ୍ବର ପୂଜା-ଉପାସନା ଚଳି ଆସୁଥିଲା, ତାହା ବଜଯାନୀ ବୌଦ୍ଧ ଧର୍ମାବଲମ୍ବୀମାନଙ୍କଦ୍ୱାରା ଜଗନ୍ନାଥ ଉପାସନାରେ ପରିଣତ ହେଲା । ଆଦିବାସୀ ଶବରମାନେ ଏହି 'ଜଗନ୍ନାଥ' ନାମଟିକୁ ଗ୍ରହଣ କରିବାରେ କୌଣସି ଦ୍ୱିଧା ଅନୁଭବ କରୁନଥିଲେ । ବଜଯାନୀ ବୌଦ୍ଧ ଧର୍ମାବଲମ୍ବୀମାନେ ଶବରମାନଙ୍କଦ୍ୱାରା ପୂଜିତ ଦାରୁଖମ୍ବ ଉପାସନାକୁ ଆପଣାର କରି ଜଗନ୍ନାଥ ଉପାସନାରେ ପରିଣତ କରିଥିବାରୁ ଏହି ପ୍ରବର୍ତ୍ତିତ ନୂତନ ଧାରା ଶବର ତଥା ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଜନପ୍ରିୟ ହୋଇ ସେହି ସ୍ତମ୍ଭ ଉପାସନାକୁ ଏକ ରାଷ୍ଟ୍ରୀୟ ମର୍ଯ୍ୟାଦା ଆଣି ଦେଇଥିଲା ।

**ପାଦଟୀକା**


୧. ରାଜଗୁରୁ (ଡଃ) ସତ୍ୟନାରାୟଣ - ଓଡ଼ିଶାର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥ, ଆମ ଜଗନ୍ନାଥ ଆମ ସଂସ୍କୃତି - ସଂପା: ପରମାନନ୍ଦ ଅଧିକାରୀ, ୧୯, ପୃ.୨୫

୨. ସାହୁ, (ଡଃ) ଯଜ୍ଞ କୁମାର- ଓଡ଼ିଶା ଇତିହାସ, ପ୍ରଥମଭାଗ, ନାଳନ୍ଦା, ବିନୋଦବିହାରୀ, କଟକ-୨, ୧୯୯୧, ପୃ.୧୮

୩. କାନୁନ୍‌ଗୋ (ଡଃ) ହରିହର - ବିବର୍ତ୍ତନ ପ୍ରକ୍ରିୟାରେ ବୁଦ୍ଧ ଜଗନ୍ନାଥ ଇତିହାସ, ପରମ୍ପରା ଓ ଜଗନ୍ନାଥ, ବିଶ୍ୱଜିତ ପ୍ରକାଶନୀ, ଅନୁଗୋଳ, ୨୦୦୦, ପୃ.୧୧୮

୪. ମହାପାତ୍ର, ଚକ୍ରଧର - ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ, ଫ୍ରେଣ୍ଡସ୍ ପବ୍ଲିସର୍ସ, ବିନୋଦ ବିହାରୀ, କଟକ-୨, ୧୯୮୯, ପୃ.୧୦୧

୫. ଦାସ (ପଣ୍ଡିତ) ନୀଳକଣ୍ଠ - ଗୀତା ପ୍ରବେଶ, ପୃ.୨୮୩

୬. କର (ଡଃ) କରୁଣାକର - ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୯, ପୃ.୧୩

୭. ନନ୍ଦ ପୂର୍ଣ୍ଣେନ୍ଦୁ କୁମାର - ଶ୍ରୀଜଗନ୍ନାଥଙ୍କ ମୂଳ ସ୍ୱରୂପ ଓ ବୌଦ୍ଧ ପ୍ରଭାବ, ଶ୍ରୀମନ୍ଦିର, ରଥଯାତ୍ରା ବିଶେଷାଙ୍କ, ଜୁଲାଇ ୨୦୦୦, ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ, ପୁରୀ, ପୃ.୮୫






୮. ଅନଙ୍ଗ ବଜ - ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି, ଦ୍ୱିତୀୟ ପର୍ଯ୍ୟାୟ, ୨୬ ଶ୍ଳୋକ- କର (ଡଃ) କରୁଣାକର - ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୯, ପୃ.୧୪, ୧୫

୯. Mohapatra K.N. - Antiquity of Jagannath - Puri as a place of pilgrimage, in Orissa Historical Research Journal, vol-III, No.1, June, 1954, Superintendent, Orissa Museum, Bhubaneswar, p.9

୧୦. କର (ଡଃ) କରୁଣାକର - ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ୧୯୬୯, ପୃ.୧୪-୧୫

୧୧. ପ୍ରଧାନ, ପ୍ରହ୍ଲାଦ - ପ୍ରଣିପତ୍ୟ ଜଗନ୍ନାଥଂ (ଜ୍ଞାନସିଦ୍ଧି ଓ ଜଗନ୍ନାଥ) କୋଣାର୍କ, ୪୫ଶ ସଂଖ୍ୟା, ୧୯୮୧, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ପୃ.୧-୭

୧୨.କ) ଦାସ (ପଣ୍ଡିତ) ନୀଳକଣ୍ଠ - ଗୀତାପ୍ରବେଶ, ପୃ.୨୮୩

ଖ) Jagannath is an appelation which Gautama himself assumed, for when he became Buddha and also when he was about to expire, he exclaimed, "O Universe, I am thy Lord." [ଦାସ (ପଣ୍ଡିତ) ନୀଳକଣ୍ଠ - ଗୀତା ପ୍ରବେଶ, ଫୁଟ୍‌ନୋଟ୍, ପୃ.୬]

୧୩. ମହତାବ (ଡଃ) ହରେକୃଷ୍ଣ - ଓଡ଼ିଶା ଇତିହାସ, ଷ୍ଟୁଡ଼େଣ୍ଟସ ଷ୍ଟୋର, ବ୍ରହ୍ମପୁର, କଟକ, ୧୯୪୮, ପୃ.୪୫୮, ୪୫୯

୧୪. ଆଚାର୍ଯ୍ୟ ପ୍ୟାରୀମୋହନ - ଓଡ଼ିଶାର ଇତିହାସ, କଟକ ପ୍ରିଣ୍ଟିଙ୍ଗ କମ୍ପାନୀ, ୧୮୭୯, ପୃ.୪୭

୧୫. ନନ୍ଦ ପୂର୍ଣ୍ଣେନ୍ଦୁ କୁମାର - ଶ୍ରୀଜଗନ୍ନାଥଙ୍କ ମୂଳ ସ୍ୱରୂପ ଓ ବୌଦ୍ଧ ପ୍ରଭାବ ଶ୍ରୀମନ୍ଦିର, ରଥଯାତ୍ରା ବିଶେଷାଙ୍କ, ଜୁଲାଇ, ୨୦୦୦, ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ, ପୁରୀ, ପୃ.୮୫

୧୬. Sahu (Dr.) N.K. - Buddhism in Orissa, Utkal University, 1958, p.165, 166

୧୭. କର (ଡଃ) କରୁଣାକର - ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ୧୯୬୯, ପୃ.୯

୧୮. - ଏଜନ-, ପୃ.୪, ୫

୧୯.କ) Das (Pandit) Neelakantha - Hints on the significance and history of Jagannath in Orissa Historical Research Journal, vol-VII, pt.-I, April, 1958, p.14

ଖ) ଦାସ (ପଣ୍ଡିତ) ନୀଳକଣ୍ଠ - ଓଡ଼ିଆ ସାହିତ୍ୟର କ୍ରମପରିଣାମ, ନୀଳକଣ୍ଠ ଗ୍ରନ୍ଥାବଳୀ, ତୃତୀୟ ଖଣ୍ଡ, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ବାଲୁବଜାର, କଟକ-୨, ୧୯୬୭

ଗ) ଦାସ ନବକିଶୋର - ପୁରୁଷୋତ୍ତମ ଶ୍ରୀଜଗନ୍ନାଥ, ଓଡ଼ିଶା ବୁକ୍ ଷ୍ଟୋର, ବିନୋଦବିହାରୀ, କଟକ-୨, ୧୯୯୧, ପୃ.୬୦



ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ
ଓଡ଼ିଶା ଭାଷା ଓ ସାହିତ୍ୟ ବିଭାଗ
ବିଜେବି (ସ୍ୱୟଂଶାସିତ) ମହାବିଦ୍ୟାଳୟ
ଭୁବନେଶ୍ୱର-୭୫୧୦୧୪




# ନୀଳାଦ୍ରିରେ ରଥୋତ୍ସବ ବନାମ ଶେଷାଦ୍ରିରେ ବ୍ରହ୍ମୋତ୍ସବ

ପ୍ରଫେସର ହରେକୃଷ୍ଣ ଶତପଥୀ


ଭେଙ୍କଟନାଥଙ୍କ ରଥଯାତ୍ରା

ଭାରତୀୟ ପରମ୍ପରା ତଥା ଆଗମଶାସ୍ତ୍ର ଅନୁସାରେ ଭଗବାନଙ୍କର ନଅଦିନ ବ୍ୟାପୀ ଯେଉଁ ଯାତ୍ରା ଅନୁଷ୍ଠିତ ହୋଇଥାଏ, ତାହା ହେଉଛି ସର୍ବୋତ୍କୃଷ୍ଟ ପବିତ୍ରତମ ଉତ୍ସବ । ଏହି ଯାତ୍ରା ସମୟରେ ଭଗବାନ ସ୍ୱୟଂ ବା କେଉଁଠି କେଉଁଠି ଉତ୍ସବ ମୂର୍ତ୍ତି ନିଜର ସିଂହାସନ ଛାଡ଼ି ବାହାରକୁ ଆସି ନିର୍ଦ୍ଦିଷ୍ଟ ମାର୍ଗରେ ନିଜ ମନଲାଖି ରଥରେ ଉପବେଶନ କରି ଭକ୍ତମାନଙ୍କୁ ଦର୍ଶନ ଦେଇଥା'ନ୍ତି ଏବଂ ସେମାନଙ୍କର ଅଭିଳାଷ ପୂରଣ କରିଥା'ନ୍ତି । ଏହି ଯାତ୍ରାକୁ ଯେଉଁମାନେ ଦେଖନ୍ତି, ଯେଉଁମାନେ କୌଣସି ନା କୌଣସି ଉପାୟରେ ଏହାର ସେବାରେ ସଂପୃକ୍ତ ହୁଅନ୍ତି, ସେମାନେ ସମସ୍ତେ ଧନ୍ୟ ଏବଂ ଭାଗ୍ୟଶାଳୀ । ବିଶ୍ୱପ୍ରସିଦ୍ଧ ପୁରୁଷୋତ୍ତମ କ୍ଷେତ୍ରରେ ଭଗବାନ୍ ପୁରୁଷୋତ୍ତମ ଜଗନ୍ନାଥଙ୍କର ଆଷାଢ଼ମାସ ଶୁକ୍ଳ ଦ୍ୱିତୀୟା ତିଥିରୁ ନଅ ଦିନବ୍ୟାପୀ ଯେଉଁ ଯାତ୍ରା ବା ଉତ୍ସବ ଆରମ୍ଭ ହୋଇଥାଏ ତାହା ନବଦିନାତ୍ମିକା ଘୋଷଯାତ୍ରା ବା ରଥୋତ୍ସବ ଭାବରେ ସର୍ବତ୍ର ପରିଚିତ । ଏହି ସମୟରେ ଭଗବାନ୍ ଜଗନ୍ନାଥ ତାଙ୍କର ଜ୍ୟେଷ୍ଠଭ୍ରାତା ବଳଭଦ୍ର, ଭଗିନୀ ସୁଭଦ୍ରା, ଶକ୍ତି ସୁଦର୍ଶନ, ଭୂଦେବୀ, ଶ୍ରୀଦେବୀ ଏବଂ ରାମକୃଷ୍ଣ ସହିତ ଶ୍ରୀମନ୍ଦିରରୁ ନିଜର ଜନ୍ମସ୍ଥାନ ଗୁଣ୍ଡିଚା ମନ୍ଦିର ଅଭିମୁଖରେ ଯାତ୍ରା କରିଥାନ୍ତି । ପବିତ୍ର ପୁରୁଷୋତ୍ତମ କ୍ଷେତ୍ର 'ନୀଳାଚଳ' ବା 'ନୀଳାଦ୍ରି' ନାମରେ ସର୍ବବିଦିତ, କାରଣ ପୌରାଣିକ ଉପାଖ୍ୟାନ ଅନୁସାରେ ବହୁ ପ୍ରାଚୀନ କାଳରେ ଏଠାରେ ଅବସ୍ଥିତ ଏକ ନୀଳପର୍ବତ ଉପରେ ଶବରରାଜା ବିଶ୍ୱାବସୁ ଭଗବାନ୍ ଜଗନ୍ନାଥଙ୍କର ଆଦିମ ବିଗ୍ରହ ନୀଳମାଧବଙ୍କୁ ପୂଜା କରୁଥିଲେ । ସେତେବେଳେ ସେହି ନୀଳାଚଳ ବା ନୀଳାଦ୍ରିରେ ପୂଜିତ ହେଉଥିବା ନୀଳମାଧବଙ୍କ ସହିତ ବଡ଼ ଭାଇ ବଳଭଦ୍ର ଓ ଭଗିନୀ ସୁଭଦ୍ରା ପୂଜା ପାଉଥିଲେ କି ନାହିଁ ସେ ବିଷୟରେ ଠିକ୍ ତଥ୍ୟ ମିଳୁନାହିଁ । ତେବେ ପ୍ରଥମରୁ ନୀଳାଦ୍ରିରେ ଏକାକୀ ଭଗବାନ୍ ଜଗନ୍ନାଥଙ୍କର ଆଦିମ ବିଗ୍ରହ ନୀଳମାଧବ ପୂଜା ପାଉଥିଲେ ବୋଲି ଅନେକ ପୁରାଣରୁ ପ୍ରମାଣ ମିଳିଥାଏ । ଏହି ଆଦିମ ବିଗ୍ରହ ପ୍ରସ୍ତର ନିର୍ମିତ ହସ୍ତାବୟବଯୁକ୍ତ ପୂର୍ଣ୍ଣ ଦଣ୍ଡାୟମାନ ସ୍ୱରୂପ ଥିଲା ବୋଲି ବିଭିନ୍ନ ପୁରାଣରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ଆଗମନ ପରେ ସେହି କାନ୍ତକମନୀୟ ପ୍ରସ୍ତରକାୟ ନୀଳମାଧବଙ୍କର ବିଗ୍ରହ ଅନ୍ତର୍ହିତ ହୋଇଯାଇଥିଲା ଏବଂ ପୁରୁଷୋତ୍ତମ ଧାମର ନୃସିଂହ କ୍ଷେତ୍ରରେ (ବର୍ତ୍ତମାନ ଯେଉଁଠାରେ ଗୁଣ୍ଡିଚା ମନ୍ଦିର ଅବସ୍ଥିତ) ବର୍ତ୍ତମାନର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ତଟରେ ଯଜ୍ଞ ସମ୍ପାଦନ କରିବା ପରେ, ଭଗବାନ ଯଜ୍ଞ ନୃସିଂହଙ୍କର ଆଦେଶକ୍ରମେ ରାଜା ମହୋଦଧିରୁ ଏକ ଭାସମାନ ଦାରୁ ସଂଗ୍ରହ କରି ତନ୍ମଧ୍ୟରୁ ଚତୁର୍ଦ୍ଧା ମୂର୍ତ୍ତିର ବିଗ୍ରହ ନିର୍ମାଣ କରାଇଥିବା କଥା ଅନେକ ପୁରାଣରେ ବର୍ଣ୍ଣିତ ହୋଇଅଛି । ତେବେ ବର୍ତ୍ତମାନ ପୁରୀଠାରେ ଯେଉଁ ରଥଯାତ୍ରା ଅନୁଷ୍ଠିତ ହେଉଅଛି, ତାହା କେବେଠାରୁ ହେଉଅଛି ଏବଂ କିଏ ପ୍ରବର୍ତ୍ତନ କରିଅଛନ୍ତି ସେ ବିଷୟରେ ପୁରାଣଗୁଡ଼ିକରେ ସ୍ପଷ୍ଟ ଉଲ୍ଲେଖ ନଥିଲେ ମଧ୍ୟ ନୀଳାଦ୍ରି ମହୋଦୟ, **ସ୍କନ୍ଦପୁରାଣ ଇତ୍ୟାଦି ପୁରାଣ ଅନୁସାରେ ଇନ୍ଦ୍ରଦ୍ୟୁମ୍ନଙ୍କର ପତ୍ନୀଙ୍କ ଇଚ୍ଛାରୁ ତାଙ୍କ ସମୟରୁ ଏହି ରଥଯାତ୍ରା ଅନୁଷ୍ଠିତ ହେଉଥିବାର ପ୍ରମାଣ ମିଳିଥାଏ । ଇନ୍ଦ୍ରଦ୍ୟୁମ୍ନଙ୍କର ପତ୍ନୀଙ୍କ ନାମ ଗୁଣ୍ଡିଚା । ତେଣୁ ମହାରାଣୀ ଗୁଣ୍ଡିଚାଙ୍କର ଅନୁରୋଧକ୍ରମେ ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଏହାକୁ ଶ୍ରୀଗୁଣ୍ଡିଚା ଯାତ୍ରା କୁହାଯାଇଥାଏ ।** ତେବେ ଯାହାହେଉ, ଶବର ରାଜା ବିଶ୍ୱାବସୁଙ୍କର ମଧ୍ୟ ରଥଯାତ୍ରାରେ କିଛି ଅବଦାନ ରହିଥିବା କଥା ଅନେକ ଶାସ୍ତ୍ର ପୁରାଣରେ ବର୍ଣ୍ଣିତ ହୋଇଅଛି, ଯାହାର ପ୍ରମାଣ ସ୍ୱରୂପ ଆଜି ମଧ୍ୟ ରାଜା ବିଶ୍ୱାବସୁଙ୍କର ବଂଶଧର ଅର୍ଥାତ୍ ବିଦ୍ୱାନ୍ ବ୍ରାହ୍ମଣ ବିଦ୍ୟାପତି ଏବଂ ବିଶ୍ୱାବସୁଙ୍କର କନ୍ୟା ଲଳିତାଙ୍କର ସନ୍ତାନମାନେ (ଦୟିତାପତି) ଏହି ରଥଯାତ୍ରାକୁ ମୁଖ୍ୟ ଭାବରେ ପରିଚାଳନା

> ପ୍ରତିବର୍ଷ ଆନ୍ଧ୍ରପ୍ରଦେଶରେ ପରମ ପବିତ୍ର ତୀର୍ଥକ୍ଷେତ୍ର ତିରୁପତିଠାରେ ନୀଳାଦ୍ରିରେ ଜଗନ୍ନାଥଙ୍କର ରଥୋତ୍ସବ ଭଳି ଶେଷାଦ୍ରିରେ ପ୍ରଭୁ ଭେଙ୍କଟନାଥଙ୍କର ମଧ୍ୟ ବ୍ରହ୍ମୋତ୍ସବ ନଅଦିନ ବ୍ୟାପୀ ଅନୁଷ୍ଠିତ ହୋଇଥାଏ ।





କରିଥାନ୍ତି । ତେଣୁ ଏକଦା ରାଜା ବିଶ୍ୱାବସୁ ନୀଳାଦ୍ରିରେ ସେହି ଆଦିମ ପ୍ରସ୍ତର ନିର୍ମିତ ନୀଳମାଧବ ମୂର୍ତ୍ତିଙ୍କର ରଥୋତ୍ସବକୁ ପାଳନ କରୁଥିଲେ - ଏ କଥାକୁ ମଧ୍ୟ ପୌରାଣିକ ଦୃଷ୍ଟିରୁ ଅସ୍ୱୀକାର କରାଯାଇନପାରେ । ଏହା ହିଁ ନୀଳାଦ୍ରିରେ ରଥୋତ୍ସବର ଜନଶ୍ରୁତି ବା ପୁରାଣ ସମ୍ମତ ସାମାନ୍ୟ ଉପୋଦ୍‌ଘାତ ।

ଠିକ୍ ସେହିଭଳି ପ୍ରତିବର୍ଷ ଆନ୍ଧ୍ରପ୍ରଦେଶରେ ପରମ ପବିତ୍ର ତୀର୍ଥକ୍ଷେତ୍ର ତିରୁପତିଠାରେ ନୀଳାଦ୍ରିରେ ଜଗନ୍ନାଥଙ୍କର ରଥୋତ୍ସବ ଭଳି ଶେଷାଦ୍ରିରେ ପ୍ରଭୁ ଭେଙ୍କଟନାଥଙ୍କର ମଧ୍ୟ ବ୍ରହ୍ମୋତ୍ସବ ନଅଦିନ ବ୍ୟାପୀ ଅନୁଷ୍ଠିତ ହୋଇଥାଏ । ଜଗନ୍ନାଥ ଏବଂ ତାଙ୍କର ମନ୍ଦିରର ଉତ୍ପତ୍ତି, କ୍ରମବିକାଶ, ନିର୍ମାଣବିଧି, ପୂଜାପାର୍ବଣ, ମହୋତ୍ସବ, ଦୈନନ୍ଦିନ ନୀତି, କ୍ଷେତ୍ରମାହାତ୍ମ୍ୟ ଇତ୍ୟାଦି ବିଷୟରେ ଅନେକ ଉପାଖ୍ୟାନ ଯେଉଁଭଳି ଅନେକ ପୁରାଣ ଯଥା- ସ୍କନ୍ଦ, ନୀଳାଦ୍ରି ମହୋତ୍ସବ, ପଦ୍ମ, ବାମଦେବ ସଂହିତା ପ୍ରଭୃତିରୁ ମିଳିଥାଏ, ଠିକ୍ ସେହିଭଳି ପ୍ରଭୁ ଭେଙ୍କଟେଶ ତଥା ଭେଙ୍କଟାଚଳ ବା ଶେଷାଚଳ (ଶେଷାଦ୍ରି)ଙ୍କର ଆବିର୍ଭାବ, ମାହାତ୍ମ୍ୟ, ଯାନିଯାତ୍ରା ବିଷୟରେ ସ୍କନ୍ଦ, ପଦ୍ମ ପ୍ରଭୃତି ବିଭିନ୍ନ ପୁରାଣରୁ ସମ୍ୟକ୍ ସୂଚନା ମିଳିଥାଏ । ଏହି ପୌରାଣିକ ଉପାଖ୍ୟାନ ଅନୁସାରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପରେ ଏହାର ପ୍ରତିଷ୍ଠା କାର୍ଯ୍ୟ ଯେଉଁଭଳି ଭଗବାନ୍ ବ୍ରହ୍ମା ସ୍ୱୟଂ ସମ୍ପାଦନ କରି ତାଙ୍କର ନବଦିନ ବ୍ୟାପୀ ରଥଯାତ୍ରା କରିବା ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ନିର୍ଦ୍ଦେଶ ଦେଇଥିଲେ, ଠିକ୍ ସେହିଭଳି ଶେଷାଚଳ ବା ବେଙ୍କଟାଚଳରେ ପ୍ରଭୁ ବେଙ୍କଟେଶଙ୍କର ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ସ୍ୱୟଂ ବ୍ରହ୍ମା ସମ୍ପାଦନ କରି ତାଙ୍କର ନବଦିନ ବ୍ୟାପୀ ରଥଯାତ୍ରାର ପ୍ରବର୍ତ୍ତନ କରାଇଥିଲେ, ଯାହାକି ଆଜି 'ବ୍ରହ୍ମୋତ୍ସବ' (ବ୍ରହ୍ମଣା ସମ୍ପାଦିତଃ ବା କ୍ରିୟମାଣଃ ଉତ୍ସବଃ) ବୋଲି କୁହାଯାଏ । ତେଣୁ ଉଭୟ ଉତ୍ସବର ଅନେକ ସାମଞ୍ଜସ୍ୟ ରହିଛି - ଯାହାକି କ୍ରମଶଃ ଆଲୋଚନା କରାଯିବ ଏବଂ ତନ୍ମଧ୍ୟରୁ ପୁରାଣ ଦୃଷ୍ଟିରୁ ମୁଖ୍ୟ ତିନିଗୋଟି ସାମଞ୍ଜସ୍ୟ ହେଲା -



ଭେଙ୍କଟନାଥ

୧. ଜଗନ୍ନାଥଙ୍କର ରଥୋତ୍ସବ ଏକ ପର୍ବତ (ନୀଳାଚଳ ବା ନୀଳାଦ୍ରି)ରେ ଯେଉଁଭଳି ଅନୁଷ୍ଠିତ ହୋଇଥାଏ, ଠିକ୍ ସେହିଭଳି ପ୍ରଭୁ ଭେଙ୍କଟନାଥଙ୍କର ରଥଯାତ୍ରା ମଧ୍ୟ ବ୍ରହ୍ମୋତ୍ସବ ନାମରେ ଅନ୍ୟ ଏକ ପବିତ୍ର ପର୍ବତ (ତାମିଲ ଭାଷାରେ ତିରୁମଲ୍ଲ - ତିରୁ ଅର୍ଥ ଶ୍ରୀ, ମଲ୍ଲ ଅର୍ଥ ପର୍ବତ) ଶେଷାଚଳ ବା ଶେଷାଦ୍ରିରେ ଅନୁଷ୍ଠିତ ହୋଇଥାଏ ।

୨. ରଥୋତ୍ସବ ଯେଉଁଭଳି ନବଦିନ ବ୍ୟାପୀ ଅନୁଷ୍ଠିତ ହୋଇଥାଏ ଠିକ୍ ସେହିଭଳି ବ୍ରହ୍ମୋତ୍ସବ ମଧ୍ୟ ନଅଦିନ ବ୍ୟାପୀ ଅନୁଷ୍ଠିତ ହୋଇଥାଏ ।

୩. ପୌରାଣିକ ଆଖ୍ୟାନ ଅନୁସାରେ ରଥଯାତ୍ରାର ପ୍ରବର୍ତ୍ତକ ଯେଉଁଭଳି ସ୍ୱୟଂ ବ୍ରହ୍ମା, ଠିକ୍ ସେହିଭଳି ବ୍ରହ୍ମୋତ୍ସବର ଆଦିମ ପ୍ରବର୍ତ୍ତକ ମଧ୍ୟ ସ୍ୱୟଂ ବ୍ରହ୍ମା । ଏଠାରେ ଉଲ୍ଲେଖନୀୟ ଯେ ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ତିରୁପତି କ୍ଷେତ୍ର ବହୁତ ଦିନ ଧରି ତାମିଲନାଡୁର ଏକ ଅଂଶବିଶେଷ ଭାବରେ ରହିଥିଲା ଏବଂ ୧୯୫୬ ମସିହାରେ ସ୍ୱତନ୍ତ୍ର ଆନ୍ଧ୍ରପ୍ରଦେଶ ଗଠନ ପରେ ଏହାକୁ ଆନ୍ଧ୍ରରେ ମିଶାଇ ଦିଆଯାଇଥିଲା । ତେଣୁ ମନ୍ଦିରର ପୂଜାପଦ୍ଧତି, ସଂସ୍କୃତି ଓ ପରମ୍ପରା ତଥା ତିରୁପତିର ଭାଷା, ଚଳଣି ଓ ପରମ୍ପରା ମଧ୍ୟ ବହୁଧା ତାମିଲନାଡୁର ପରମ୍ପରାଦ୍ୱାରା ପ୍ରଭାବିତ ହୋଇଛି । ହେଲେ ବର୍ତ୍ତମାନ ଏହି ମନ୍ଦିରମାଳିନୀ ତିରୁପତି ମହାନଗରୀ (ଏହା ନିକଟରେ ଏକ କର୍ପୋରେସନ୍‌ର ମାନ୍ୟତା ଲାଭ କରିଅଛି) ପାଇଁ ଆନ୍ଧ୍ରପ୍ରଦେଶ ବହୁଦୃଷ୍ଟିରୁ ଗର୍ବିତ ଏବଂ ଏହା ଆନ୍ଧ୍ରର ଆଧ୍ୟାତ୍ମିକ ରାଜଧାନୀ ଭାବରେ କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ପରିଚିତ ହୋଇପାରିଅଛି । ଏକ କର୍ପୋରେସନ୍ ବା ମହାନଗରର ଆବଶ୍ୟକୀୟ ଲୋକସଂଖ୍ୟା ତିରୁପତିରେ ନାହିଁ ସତ, (ତିରୁପତିର ସ୍ଥାୟୀ ଲୋକସଂଖ୍ୟା ପ୍ରାୟ ୪ ଲକ୍ଷ) ହେଲେ ପ୍ରତିଦିନ ଏହି ସହରକୁ ପ୍ରାୟ ୭୦ରୁ ୮୦ ହଜାର ତୀର୍ଥଯାତ୍ରୀ ଭଗବାନ୍ ବାଲାଜୀଙ୍କ ଦର୍ଶନ ପାଇଁ ଆସିଥାଆନ୍ତି ଏବଂ ସେମାନେ ସମସ୍ତେ ତିରୁପତିଠାରୁ ୧୮ କିଲୋମିଟର (ଉଠାଣି ରାସ୍ତା) ଦୂରରେ ପାହାଡ଼ ଉପରେ ଅବସ୍ଥିତ ତିରୁମଲ୍ଲରେ ଥିବା ଭେଙ୍କଟସ୍ୱାମୀ ମନ୍ଦିରକୁ ଯାଇଥାଆନ୍ତି ଏବଂ ତାଙ୍କର ଦର୍ଶନ କରି ଆଶୀର୍ବାଦ ଲାଭ କରିଥାଆନ୍ତି । **ତିରୁପତି ମନ୍ଦିରର ଦୈନିକ ଆୟ ପ୍ରାୟ ଦେଢ଼କୋଟି ଟଙ୍କା ଏବଂ ଏହା କେବଳ ଭକ୍ତମାନଙ୍କ ଦ୍ୱାରା ଦିଆଯାଇଥିବା ହୁଣ୍ଡିରୁ ସଂଗ୍ରହ କରାଯାଇଥାଏ । ଅନ୍ୟାନ୍ୟ ଆୟ ମଧ୍ୟ ରହିଛି । ମନ୍ଦିରର ଆୟବ୍ୟୟ, ଦୈନିକ ପ୍ରଶାସନ, ନୀତି - ଏକ ଟ୍ରଷ୍ଟ ଦ୍ୱାରା ପରିଚାଳିତ ହୋଇଥାଏ, ଯାହା ଟି.ଟି.ଡି. (ତିରୁମଲ୍ଲ ତିରୁପତି ଦେବସ୍ଥାନମ୍) ନାମରେ ପ୍ରସିଦ୍ଧ ।** ମନ୍ଦିରର ବାର୍ଷିକ ଆୟ ବ୍ୟୟଅଟକଳ ହେଉଅଛି ପ୍ରାୟ ଏକହଜାର କୋଟି ଟଙ୍କା । ତେଣୁ ଏହି ଆଧ୍ୟାତ୍ମିକ ନଗରୀର ବିଭିନ୍ନ ବିଶେଷତ୍ୱକୁ ଆଖିରେ ରଖି ମହାନଗରୀ ପାଇଁ ଉଦ୍ଦିଷ୍ଟ କେତେକ ସର୍ତ୍ତକୁ କୋହଳ କରାଯାଇ ଏହାକୁ ମହାନଗରୀର ମାନ୍ୟତା ଦିଆଯାଇଛି, ଯାହା ମଧ୍ୟ ଓଡ଼ିଶାର ଆଧ୍ୟାତ୍ମିକ ରାଜଧାନୀ 'ପୁରୀ' ପାଇଁ ପ୍ରସ୍ତାବ କରାଯାଇପାରେ ।

ତିରୁପତିଠାରେ ନବଦିନବ୍ୟାପୀ ଯେଉଁ ବ୍ରହ୍ମୋତ୍ସବ ପାଳନ କରାଯାଇଥାଏ ତାହାର ଏକ ଚିତ୍ର ଉପସ୍ଥାପନ କରିବାକୁ ଏଠାରେ

ସମୀଚୀନ ମନେକରେ, ଫଳରେ ଏହାର ତୁଳନା ପୁରୀର ରଥୋତ୍ସବ ସହିତ କରିବା ସହଜସାଧ ହେବ । ବ୍ରହ୍ମୋତ୍ସବର ପ୍ରଥମ ଦିନ ଧ୍ୱଜାରୋହଣ ପର୍ବ ଅନୁଷ୍ଠିତ ହେବାପରେ ସ୍ୱୟଂ ମଲ୍ଲୟାପ୍ପା ସ୍ୱାମୀ (ପ୍ରଭୁ ଭେଙ୍କଟେଶଙ୍କର ଉତ୍ସବ ବିଗ୍ରହ) ଶ୍ରୀଦେବୀ ଏବଂ ଭୂଦେବୀଙ୍କ ସହ ଶେଷବାହନରେ ଆସି ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ଏହି କାର୍ଯ୍ୟର ଅୟମାରମ୍ଭ ସ୍ୱୟଂ ଭଗବାନ ବ୍ରହ୍ମା ଆସି କରିଥାନ୍ତି ଏବଂ ପରବର୍ତ୍ତୀ କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟ ନିଜେ ତଦାରଖ କରନ୍ତି । ଯେଉଁ ବାହନରେ ବାଲାଜୀ ଭଗବାନଙ୍କର ମୂର୍ତ୍ତି ରାତ୍ରିରେ ଦୁଇ ଘଣ୍ଟାବ୍ୟାପୀ ପରିଭ୍ରମଣ କରନ୍ତି ତାହାକୁ ବ୍ରହ୍ମରଥ କୁହାଯାଏ । ପୁରୀର ରଥଯାତ୍ରା ସମୟରେ ଯଦ୍ୟପି ଜଗନ୍ନାଥ ସ୍ୱୟଂ ରଥରେ ପର୍ଯ୍ୟଟନ କରିଥାନ୍ତି, ତଥାପି ତାଙ୍କ ସହିତ ଶ୍ରୀଦେବୀ ଏବଂ ଭୂଦେବୀ ସଙ୍ଗରେ ଯାଇଥାନ୍ତି । ଦ୍ୱିତୀୟରେ ଉଭୟତ୍ର ଭଗବାନ୍ ବ୍ରହ୍ମା ରଥ ପ୍ରତିଷ୍ଠା କାର୍ଯ୍ୟ ତଦାରଖ କରିବା ସଂଗେ ସଂଗେ ସମସ୍ତ ଘୋଷଯାତ୍ରାର କାର୍ଯ୍ୟକୁ ସଞ୍ଚାଳନ କରୁଥିବା ବିଷୟରେ ପୁରାଣରେ ବର୍ଣ୍ଣିତ ହୋଇଅଛି ।


ପୁରୀ ରଥଯାତ୍ରା

ଦ୍ୱିତୀୟ ଦିନରେ ମଧ୍ୟ ଭଗବାନ ଭୂଦେବୀ ଏବଂ ଶ୍ରୀଦେବୀଙ୍କ ସହିତ ହଂସବାହନରେ ଯାତ୍ରା କରିଥାନ୍ତି । ଏହି ଦିନ ଭଗବାନ ହଂସାରୂଢ଼ ହୋଇ ଜ୍ଞାନଦାତ୍ରୀ ଶାରଦାଙ୍କର ରୂପଧାରଣ କରିଥିବା କଥା କୁହାଯାଏ । ସବୁଦିନ କିନ୍ତୁ ଆଗେ ଆଗେ ବ୍ରହ୍ମାଙ୍କର ରଥ ଚାଲିଥାଏ । ପୁରୀରେ ରଥଯାତ୍ରା ସମୟରେ ସପ୍ତଧା ମୂର୍ତ୍ତିଙ୍କର ଯାତ୍ରା ହୋଇଥାଏ । ଏଥିରେ ମା' ସୁଭଦ୍ରା ଥାଆନ୍ତି । ସେ ତ ଏକାନଂସା ଦୁର୍ଗା, ନନ୍ଦଗୋପକୁଳୋଦ୍ଭ ବା ଭଗବାନ ଶ୍ରୀକୃଷ୍ଣଙ୍କର ଭଗିନୀ । ଏହି ରୂପକୁ ପରିକଳ୍ପନା କରି ଭଗବାନ ଭେଙ୍କଟେଶ୍ୱର ନଅଦିନ ବ୍ୟାପୀ ବ୍ରହ୍ମୋତ୍ସବ ମଧ୍ୟରେ ଥରେ ଦେବୀ ଶାରଦା ଓ ଆଉଥରେ ମୋହିନୀ ନାରୀବେଶରେ ରଥରେ ସମ୍ଭବତଃ ପର୍ଯ୍ୟଟନ କରିଥାନ୍ତି ।

ତୃତୀୟ ଦିନ ସିଂହବାହନରେ ସ୍ୱୟଂ ମଲ୍ଲୟାପ୍ପାସ୍ୱାମୀ ଯୋଗାରୂଢ଼ ଅବସ୍ଥାରେ ପରିଭ୍ରମଣ କରିଥାନ୍ତି । ଯୋଗାରୂଢ଼ ଅବସ୍ଥା - ଯୋଗେଶ୍ୱର କୃଷ୍ଣ ଅଥବା ତପସ୍ୟାରତ ଭଗବାନ ନଟରାଜଙ୍କର ମୂର୍ତ୍ତିର ମଧ୍ୟ ପରିକଳ୍ପନା କରାଯାଇପାରେ । ଅବଶ୍ୟ ପୂର୍ବରୁ ଯେଉଁ ଶେଷ ବାହନ କଥା କୁହାଯାଇଅଛି ତାହା ବଡ଼ଭାଇ ବଳଭଦ୍ରଙ୍କ ସ୍ୱରୂପର ଏକ ନମୁନା ମାତ୍ର ।

ଚତୁର୍ଥ ଦିବସରେ କଳ୍ପବୃକ୍ଷ ବାହନରେ ପରିଭ୍ରମଣ କରି ସମସ୍ତ ଭକ୍ତଙ୍କର ବାଞ୍ଛାକଳ୍ପତରୁ ଭାବରେ ଭଗବାନ ଭେଙ୍କଟେଶ ଆବିର୍ଭୂତ ହୋଇଥାନ୍ତି । ରାତ୍ରିରେ ଯେଉଁ ବାହନରେ ପର୍ଯ୍ୟଟନ କରନ୍ତି ତାହା 'ସର୍ବଭୂପାଳ' ବାହନ । ପଞ୍ଚମ ଦିବସରେ ଭଗବାନ ମୋହିନୀ ଅବତାରରେ ଆବିର୍ଭୂତ ହୋଇଥାନ୍ତି ଏବଂ ଯେଉଁ ବାହନରେ ପରିଭ୍ରମଣ କରନ୍ତି ତାହା ହେଉଛି ଏକ ଆନ୍ଦୋଳିକା ବା ସବାରୀ । ଏହି ସମୟରେ ମୋହିନୀ ନାରୀଙ୍କର ସୁରକ୍ଷା ଦାୟିତ୍ୱରେ ପାଖେ ପାଖେ ଥାଆନ୍ତି ଭଗବାନ କୃଷ୍ଣ । ପ୍ରଭୁ ଭେଙ୍କଟେଶ ଯେଉଁ ପର୍ବତରେ ରହନ୍ତି ତାର ନାମ ଶେଷାଚଳ ଅର୍ଥାତ୍ ଶେଷ ବା ବଳଭଦ୍ର ହେଉଛନ୍ତି ଏହି ପର୍ବତର ମାଲିକ । ପୁରୁଷୋତ୍ତମ କ୍ଷେତ୍ରରେ ବିରାଜମାନ ବଳଭଦ୍ର ହେଉଛନ୍ତି ବଡ଼ଭାଇ ଏବଂ ଜଗନ୍ନାଥଙ୍କ ସମସ୍ତ ଧନସମ୍ପତ୍ତିର ମାଲିକ ହେଉଅଛନ୍ତି ତାଙ୍କର ବଡ଼ଭାଇ ବଳଭଦ୍ର । ତେଣୁ ତାଙ୍କୁ ବଡ଼ ଖାଉନ୍ଦ ବା ପୁରୀର ଅଧିଷ୍ଠାତା ଦେବ ବୋଲି କୁହାଯାଏ । ଠିକ୍ ସେହିଭଳି ଭେଙ୍କଟେଶଙ୍କର ବଡ଼ଭାଇ ତାଙ୍କର ସ୍ଥାନ ଶେଷାଚଳ ନିଜର ସାନଭାଇଙ୍କର ରହିବା ପାଇଁ ଛାଡ଼ି ଦେଇ ନିଜେ ତିରୁପତିର ଗୋବିନ୍ଦ ସ୍ୱାମୀ ମନ୍ଦିରରେ ଅବସ୍ଥାନ କରି ସମସ୍ତ ଧନସମ୍ପତ୍ତିର ହିସାବ ରଖି ରଖି ଥକ୍କାମାରି ଶୟନ କରିଥିବାର ଏକ ବିଶାଳ ମୂର୍ତ୍ତି ଆଜି ପୂଜା ପାଉଅଛନ୍ତି । ଏ ପ୍ରସଙ୍ଗରେ ପ୍ରସିଦ୍ଧ ଶ୍ଲୋକଟି ହେଉଛି-

ଶେଷେ ଶୟନଶୀଳସ୍ୟ ଶେଷାଚଳନିବାସିନଃ ।<br>
ନିତ୍ୟଂ ଶେଷପ୍ରିୟସ୍ୟାସ୍ୟ ଶ୍ରୀନିବାସସ୍ୟ ଶାର୍ଙ୍ଗିଣଃ ॥

ବ୍ରହ୍ମୋତ୍ସବର ପଞ୍ଚମ ଦିବସଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହିଦିନ ଗରୁଡ଼ବାହନ ସେବା ଅନୁଷ୍ଠିତ ହୋଇଥାଏ । ସ୍ୱୟଂ ଗରୁଡ଼ଙ୍କର ବାହନରେ ଭଗବାନ୍ ପର୍ଯ୍ୟଟନ କରିଥାଆନ୍ତି । ଏ ଦିନର ବିଶେଷତ୍ୱ ହେଲା ଯେ ବାଲାଜୀ ଭେଙ୍କଟେଶ୍ୱରଙ୍କର ମୂଳମୂର୍ତ୍ତିରେ ଯେତେ ଅଳଙ୍କାର ଲାଗିଥାଏ, ସେ ସମସ୍ତ ଅଳଙ୍କାରକୁ ଆଣି ମଲ୍ଲୟାପ୍ପାସ୍ୱାମୀଙ୍କର ଶରୀରରେ ଅଳଙ୍କୃତ କରାଯାଇଥାଏ । ତେଣୁ ଏହାକୁ ସେଦିନ ପାଇଁ ମୂଳ ବିଗ୍ରହ ବୋଲି ଧରି ନିଆଯାଇଥାଏ । ଅବଶ୍ୟ ଜଗନ୍ନାଥଙ୍କର ସୁନାବେଶର ପରମ୍ପରା ପୁରୀଠାରେ ହୋଇଥାଏ, ହେଲେ ତାହା ରଥଯାତ୍ରା ସମାପନ ପରେ ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ବଡ଼ଦାଣ୍ଡରେ ସମ୍ପନ୍ନ ହୋଇଥାଏ । ଏହିଦିନ ତିରୁପତିଠାରେ ଭଗବାନଙ୍କର ଗରୁଡ଼ବାହନ ସେବାକୁ ଉପଭୋଗ କରିବାପାଇଁ ପ୍ରାୟ ୫ ଲକ୍ଷରୁ ଊର୍ଦ୍ଧ୍ୱ ଭକ୍ତଙ୍କର ସମାଗମ ଘଟିଥାଏ ।

ଷଷ୍ଠ ଦିବସରେ ଭଗବାନ ତିରୁମଲ୍ଲଠାରେ ରାମଙ୍କ ରୂପରେ ଆବିର୍ଭୂତ ହୋଇଥାଆନ୍ତି ଏବଂ ଯେଉଁ ବାହନରେ ବିଚରଣ କରନ୍ତି ତାହା ହନୁମଦ୍‌ବାହନ । ପୁରୀର ରଥଯାତ୍ରାର ପରମ୍ପରା ଅନୁସାରେ ଜଗନ୍ନାଥ ହେଉଛନ୍ତି ସ୍ୱୟଂ ରାମଚନ୍ଦ୍ର ଏବଂ ତାଙ୍କର ରଥଯାତ୍ରା ସମୟରେ ପ୍ରତିବର୍ଷ ବିଭୀଷଣ ଆସି ରଥଯାତ୍ରା ଦର୍ଶନ କରିଥାନ୍ତି ।

ସପ୍ତମ ଦିବସରେ ଭଗବାନ ବେଙ୍କଟେଶଙ୍କ ଯେଉଁ ଦୁଇଥର ଯାତ୍ରା ଅନୁଷ୍ଠିତ ହୋଇଥାଏ ତାହା ଯଥାକ୍ରମେ ସୂର୍ଯ୍ୟ ଓ ଚନ୍ଦ୍ରବାହନରେ





ସମ୍ପାଦିତ ହୋଇଥାଏ । ଭଗବାନ ଜଗନ୍ନାଥଙ୍କର ଦୁଇଟି ନେତ୍ରକୁ ଭକ୍ତମାନେ ଚନ୍ଦ୍ର ଓ ସୂର୍ଯ୍ୟ ଭାବରେ ଆରାଧନା କରିଥାନ୍ତି । ଏକ ଶିଳାଲେଖରେ ମଧ ଲେଖାଯାଇଛି - 'ଚନ୍ଦ୍ରସୂର୍ଯ୍ୟୌ ଚ ନେତ୍ରେ' ।

ଅଷ୍ଟମ ଦିବସରେ ପ୍ରକୃତ ରଥଯାତ୍ରା ହୋଇଥାଏ ଏବଂ ଭଗବାନ ବାଲାଜୀ ରଥରେ ଯାତ୍ରା କରିଥାନ୍ତି । ଏହି ଦିନ ପୁରୀଠାରେ ଶ୍ରୀଗୁଣ୍ଡିଚା ଦିନ ରଥଟଣା ପୂର୍ବରୁ ଯାହା ଯାହା ଔପଚାରିକତା ସମ୍ପାଦନ କରାଯାଇଥାଏ, ସେହି ସେହି ଔପଚାରିକତା ତିରୁମଲ୍ଲଠାରେ ମଧ ସମ୍ପାଦନ କରାଯାଇଥାଏ । ଏକ ମହାନ୍ କାଷ୍ଠନିର୍ମିତ ରଥରେ ଭଗବାନ ଭୂଦେବୀ ଓ ଶ୍ରୀଦେବୀଙ୍କ ସହିତ ପରିଭ୍ରମଣ କରିଥାନ୍ତି । ରଥର ରଜ୍ଜୁକୁ ଧରି ଭକ୍ତମାନେ ଟାଣୁଥିବା ପରମ୍ପରା ତିରୁମଲ୍ଲଠାରେ କେବେଠାରୁ ରହିଛି ସେ ବିଷୟରେ ଇତିହାସ ନୀରବ । ହେଲେ ଏହା ନିଶ୍ଚିତ ପୁରୀର ଦୃଶ୍ୟକୁ ମନେ ପକାଇ ଦେଇଥାଏ । ଏହିଦିନ ଭଗବାନ୍ ବେଙ୍କଟେଶଙ୍କର 'ରାଜାଧିରାଜ' ବେଶ ଅନୁଷ୍ଠିତ ହୋଇଥାଏ । ସବୁଠାରୁ ଉଲ୍ଲେଖନୀୟ କଥା ହେଉଛି ଯେ ଏହିଦିନରୁ ରଥଟଣାର ମୁହୂର୍ତ୍ତନିର୍ଦ୍ଧାରଣ । ରଥପୂଜା, ରଥପ୍ରତିଷ୍ଠା, ନବଗ୍ରହପୂଜା ଇତ୍ୟାଦି ସହ ରଥାରୋହଣ ଓ ରଥଟଣା ମୁହୂର୍ତ୍ତ ନିର୍ଦ୍ଧାରଣ ବିଭିନ୍ନ ଔପଚାରିକତା ମଧ୍ୟରୁ ଅନ୍ୟତମ ମୁଖ୍ୟ ଔପଚାରିକତା ।

'ବ୍ରହ୍ମୋତ୍ସବ'ର ଅନ୍ତିମ ଦିବସ ହେଉଛି ନବମ ଦିବସ । ଏହିଦିନ ଭଗବାନଙ୍କର ସ୍ନାନଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହିଦିନ ପ୍ରଭୁଙ୍କର ସକାଳୁ ଅବକାଶ, ମଇଲମ ପ୍ରଭୃତି କାର୍ଯ୍ୟ ସମ୍ପାଦନ ପରେ ସେବାୟତମାନେ ଭଗବାନଙ୍କର ବିଗ୍ରହ ସୁଦର୍ଶନ ଚକ୍ରକୁ ଏକ ଆକର୍ଷଣୀୟ ଶୋଭାଯାତ୍ରାରେ ତିରୁମଲ୍ଲଠାରେ ଅବସ୍ଥିତ ସ୍ୱାମୀ ପୁଷ୍କରିଣୀ ମଧକୁ ନେଇଥାନ୍ତି । ସ୍ୱାମୀ ପୁଷ୍କରିଣୀକୁ ନେବା ପୂର୍ବରୁ 'ଚକ୍ରରାଜ' ମନ୍ଦିର ପ୍ରଦକ୍ଷିଣ କରିଥାନ୍ତି । ଏହିଦିନ ଭଗବାନ ବାଲାଜୀଙ୍କର ଜନ୍ମଦିନ ପାଳନ କରାଯିବାର ପରମ୍ପରା ରହିଛି । ଠିକ୍ ସେହିଭଳି ପୁରୀଠାରେ ଦେବସ୍ନାନ ପୂର୍ଣ୍ଣିମାଦିନ ଭଗବାନ ଜଗନ୍ନାଥଙ୍କର ଯେଉଁ ସ୍ନାନଯାତ୍ରା ଅନୁଷ୍ଠିତ ହୋଇଥାଏ, ତାହା ତାଙ୍କର ଜନ୍ମଦିନ ବୋଲି କୁହାଯାଏ । ସ୍ନାନଯାତ୍ରା ଦିନ ଜୀଉମାନଙ୍କୁ ସ୍ନାନମଣ୍ଡପକୁ ପହଣ୍ଡିରେ ଆଣିବା ପୂର୍ବରୁ ମନ୍ଦିର ଅଭ୍ୟନ୍ତରରେ ଭଗବାନଙ୍କର କିଛି ଗୁପ୍ତସେବା ଅନୁଷ୍ଠାନ କରାଯାଇଥାଏ । ଠିକ୍ ସେହିଭଳି ତିରୁମଲ୍ଲଠାରେ ଚକ୍ରସ୍ନାନ ପୂର୍ବରୁ ମନ୍ଦିର ମଧରେ କିଛି ଗୋପନୀୟ ସେବା ମଧ ଅନୁଷ୍ଠିତ ହୋଇଥାଏ, ଯାହାକୁ ଏଠିକାର ପରମ୍ପରା ଅନୁସାରେ 'ଏକାନ୍ତ ସେବା' ବୋଲି କୁହାଯାଇଥାଏ । ଏହିଦିନ ପ୍ରଭୁ ବରାହ ସ୍ୱାମୀଙ୍କ ମନ୍ଦିରକୁ ଯାଇଥାନ୍ତି, କାରଣ ବରାହସ୍ୱାମୀ ହେଉଛନ୍ତି କ୍ଷେତ୍ରାଧିପତି । ଏହାପରେ ମହାଆଡ଼ମ୍ବରର ସହିତ ସ୍ୱାମୀ ପୁଷ୍କରିଣୀରେ ଅଭିଷେକୋତ୍ସବ ଅନୁଷ୍ଠିତ ହୋଇଥାଏ । ଏହି ମୁହୂର୍ତ୍ତକୁ ଅତ୍ୟନ୍ତ ମଙ୍ଗଳମୟ ମୁହୂର୍ତ୍ତ ବୋଲି କୁହାଯାଇଥାଏ । ଚକ୍ରରାଜ ସୁଦର୍ଶନଙ୍କର ସ୍ନାନ ସଙ୍ଗେ ସଙ୍ଗେ ଭକ୍ତମାନେ ମଧ ବହୁ ପରିମାଣରେ ସ୍ୱାମୀ ପୁଷ୍କରିଣୀରେ ବୁଡ଼ ପକାଇଥାନ୍ତି । ଏତଦ୍‌ଦ୍ୱାରା ସମସ୍ତ ପାପ ବିମୋଚନ ହେବା ସଙ୍ଗେ ସଙ୍ଗେ ଭଗବାନଙ୍କର ଆଶୀର୍ବାଦ ମିଳିଥାଏ ବୋଲି ପରମ୍ପରା ରହିଛି । ଏହାପରେ ଶାସ୍ତ୍ରାର୍ଥ ସଂଗୋଷ୍ଠୀ ଏବଂ ତୀର୍ଥ (ପାଦୋଦକ) ଗ୍ରହଣ ଆଦି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ତା'ପରେ ଭଗବାନ୍ ଦୋଳିରେ ଉପବେଶନ କରି କିଛି ସମୟ ଝୁଲିବା ପରେ ମନ୍ଦିରର ଗର୍ଭଗୃହରେ ପ୍ରବେଶ କରିଥାନ୍ତି । ରାତ୍ରି ୧୦ଟା ସମୟରେ ଧ୍ୱଜାବରୋହଣ କାର୍ଯ୍ୟକ୍ରମ ଅନୁଷ୍ଠିତ ହେବାପରେ ବ୍ରହ୍ମୋତ୍ସବ କାର୍ଯ୍ୟ ସମାପ୍ତ ହୋଇଥାଏ।

ତିରୁପତିଠାରେ ଅନୁଷ୍ଠିତ ବ୍ରହ୍ମୋତ୍ସବ ଓ ପୁରୀର ରଥୋତ୍ସବ ବିଷୟରେ ଆଲୋଚନା କଲାବେଳେ ଗୋଟିଏ ଉଲ୍ଲେଖନୀୟ ଘଟଣା ହେଉଛି - ମହାଲକ୍ଷ୍ମୀ ପ୍ରସଙ୍ଗ । ରତ୍ନସିଂହାସନରେ ଭଗବାନ ଜଗନ୍ନାଥ ଭାଇ ବଳଭଦ୍ର ଓ ଭଗିନୀ ସୁଭଦ୍ରାଙ୍କ ସହିତ ସବୁଦିନ ଅବସ୍ଥାନ କରିଥାନ୍ତି । ସେହିଭଳି ରଥଯାତ୍ରା ସମୟରେ ସେ ସେମାନଙ୍କ ସହିତ ଶ୍ରୀମନ୍ଦିରରୁ ଗୁଣ୍ଡିଚା ମନ୍ଦିରକୁ ଯାଇଥାନ୍ତି । ଲକ୍ଷ୍ମୀଙ୍କୁ ସଙ୍ଗରେ ନେଇ ନଥାନ୍ତି । ସେଥିପାଇଁ ସେ କ୍ରୋଧାନ୍ୱିତ ହୋଇ ହେରାପଞ୍ଚମୀ ଦିନ ଶ୍ରୀମନ୍ଦିରରୁ ଗୁଣ୍ଡିଚା ମନ୍ଦିରକୁ ଯାଇ କିଛି ସମ୍ମୋହନ ଚୂର୍ଣ୍ଣ ଶ୍ରୀଜୀଉଙ୍କ ଉଦ୍ଦେଶ୍ୟରେ ଫିଙ୍ଗି ଦେଇ ନନ୍ଦିଘୋଷ ରଥରୁ ଖଣ୍ଡିଏ କାଠ ଭାଙ୍ଗି ଖୁବ୍ ତରତର ହୋଇ ହେରା ଗୋହିରୀ ସାହି ଦେଇ ଶ୍ରୀମନ୍ଦିରକୁ ପଳାଇ ଆସନ୍ତି । ତା'ପରେ ନୀଳାଦ୍ରିବିଜେ ଦିନ ମଧ ଯେତେବେଳେ ଜଗନ୍ନାଥ ଶ୍ରୀମନ୍ଦିରରେ ପ୍ରବେଶ କରିବାକୁ ଚାହାନ୍ତି ସେତେବେଳେ ମହାଲକ୍ଷ୍ମୀଙ୍କର ସେବାୟତମାନେ ସିଂହ ଦରଜା ବନ୍ଦ କରି ଦେଇ ବଚନିକା ଆରମ୍ଭ କରିଦେଇଥାନ୍ତି । ସେହିଭଳି ଶ୍ରୀଭେଙ୍କଟେଶ ସ୍ୱାମୀ ତିରୁମଲ୍ଲ ମନ୍ଦିରରେ ଏକାକି ହିଁ ରହିଥାନ୍ତି ଏବଂ ଅର୍ଦ୍ଧାଙ୍ଗିନୀ ମହାଲକ୍ଷ୍ମୀ ପଦ୍ମାବତୀ ସେଠାରୁ ପ୍ରାୟ ୨୫ କି.ମି. ଦୂର ତିରୁଚାନୁର୍‌ଠାରେ ପଦ୍ମାବତୀ ମନ୍ଦିରରେ ଅବସ୍ଥାନ କରନ୍ତି । ରଥଯାତ୍ରା ସମୟରେ ମଧ ସେ ସଙ୍ଗରେ ଯାଆନ୍ତି ନାହିଁ । ଏହାର ଅର୍ଥ ନୁହେଁ ଯେ ପ୍ରଭୁ ଜଗନ୍ନାଥ ବା ପ୍ରଭୁ ବାଲାଜୀ ଶ୍ରୀନିବାସ ନିଜ ନିଜ ଅର୍ଦ୍ଧାଙ୍ଗିନୀ ମହାଲକ୍ଷ୍ମୀ ବା ପଦ୍ମବତୀଙ୍କଠାରୁ ଦୂରରେ ରହିଥାନ୍ତି ବା ଦୂରରେ ରହିବାକୁ ଚାହାନ୍ତି । ଏଭଳି ହେଲେ ଦାମ୍ପତ୍ୟ ଜୀବନରେ କିଛିଟା ବାଧା ସୃଷ୍ଟି ହୋଇଥାଏ । ତେଣୁ ପରମ୍ପରା ଅନୁସାରେ ଶ୍ରୀଜୀଉ ବା ଭଗବାନ ବାଲାଜୀ ମହାଲକ୍ଷ୍ମୀଙ୍କୁ ସର୍ବଦା ନିଜ ନିଜ ହୃଦୟ ସିଂହାସନରେ ଅବସ୍ଥାପିତ କରିଥାନ୍ତି । ତେଣୁ ଶ୍ରୀଭେଙ୍କଟେଶ ଏବଂ ପଦ୍ମାବତୀଙ୍କ ବିଷୟରେ କୁହାଯାଇଛି -

ଈଶାନାଂ ଜଗତୋ[illegible]ସ୍ୟ ବେଙ୍କଟପତେଃ ବିଷ୍ଣୋଃ ପରାଂ ପ୍ରେୟସୀଂ
ତଦ୍‌ବକ୍ଷଃସ୍ଥଳନିତ୍ୟବାସରସିକାଂ ତତ୍‌କ୍ଷାନ୍ତିସଂବର୍ଦ୍ଧିନୀମ୍ ।
ପଦ୍ମାଳଂକୃତପାଣିପଲ୍ଲବଯୁଗାଂ ପଦ୍ମାସନସ୍ଥାଂ ଶ୍ରିୟଂ
ବାତ୍ସଲ୍ୟାଦିଗୁଣୋଜ୍ଜ୍ୱଳାଂ ଭଗବତୀଂ ବନ୍ଦେ ଜଗନ୍ମାତରମ୍ ।।

ତେଣୁ ବିଷ୍ଣୁଙ୍କର ପ୍ରେୟସୀ ପଦ୍ମାସନସ୍ଥା ମହାଲକ୍ଷ୍ମୀ ସର୍ବଦା ତାଙ୍କର ବକ୍ଷଃସ୍ଥଳରେ ହିଁ ନିବାସ କରିଥାନ୍ତି । ତେଣୁ ରଥଯାତ୍ରା ସମୟରେ ରଥରେ ତାଙ୍କୁ ସଶରୀରରେ ନେବାର କୌଣସି ଆବଶ୍ୟକତା ନଥିବାରୁ





ପ୍ରାୟତଃ ଜଗନ୍ନାଥ ଅଥବା ବେଙ୍କଟନାଥ ନିଜ ନିଜ ଅର୍ଦ୍ଧାଙ୍ଗିନୀକୁ ସଙ୍ଗରେ ନେଇ ନଥାନ୍ତି ।

ଜଗନ୍ନାଥଙ୍କର ରଥଯାତ୍ରା ସମୟରେ ଯେଭଳି ବିଭିନ୍ନ ସେବାୟତ ବା ନିଯୋଗ ବିଭିନ୍ନ କାର୍ଯ୍ୟ ସମ୍ପାଦନ କରିବାର ପରମ୍ପରା ରହିଥାଏ, ଠିକ୍ ସେହିଭଳି ସପ୍ତଗିରିରେ ମଧ ଭେଙ୍କଟେଶର ସ୍ୱାମୀଙ୍କର ବ୍ରହ୍ମୋତ୍ସବ ସମୟରେ ବିଭିନ୍ନ ସେବାୟତମାନେ ବିଭିନ୍ନ କାର୍ଯ୍ୟ ସମ୍ପାଦନ କରିଥାନ୍ତି । ସେମାନଙ୍କ ମଧ୍ୟରୁ ଜୀୟାଙ୍ଗାରମାନେ ଦିବ୍ୟ ପ୍ରବନ୍ଧପାଠ ତାମିଲ୍‌ବେଦ) ଓ ଆଚାର୍ଯ୍ୟ ପୁରୁଷ ସଂସ୍କୃତ ବେଦ ପାରାୟଣ କାର୍ଯ୍ୟ ସମ୍ପାଦନ କରନ୍ତି ଏବଂ ଅର୍ଚ୍ଚକମାନେ ପୂଜା ବା ପୌରୋହିତ୍ୟ କାର୍ଯ୍ୟ କରିଥାନ୍ତି । ଜଗନ୍ନାଥଙ୍କଠାରେ ଯେଭଳି ସେବା ବା ନିଯୋଗର ବ୍ୟବସ୍ଥା ଥାଏ, ଠିକ୍ ସେହିଭଳି ଏଠାରେ 'କୈଙ୍କର୍ଯ୍ୟ' ବା କିଙ୍କର (ସେବା)ର ଭାବର ବ୍ୟବସ୍ଥା ମଧ ରହିଥାଏ । ଏହି କୈଙ୍କର୍ଯ୍ୟପରଲୁ ବା ସମ୍ପ୍ରଦାୟଗୁଡ଼ିକ ହେଲା - ପୁଷ୍ପକୈଙ୍କର୍ଯ୍ୟପରଲୁ (ଯେଉଁମାନେ ଭଗବାନଙ୍କୁ ନିତ୍ୟ ପୁଷ୍ପହାର ଯୋଗାଇ ଦେଇଥାନ୍ତି), ଦୀପଶିଖା କୈଙ୍କର୍ଯ୍ୟପରଲୁ (ଅଖଣ୍ଡ ଦୀପ ପ୍ରଜ୍ୱାଳନକାରୀ) ଗୋଡ଼ଗୁକୈଙ୍କର୍ଯ୍ୟପରଲୁ (ଛତ୍ରଯୋଗାଣକାରୀ), ପୋଟୁକୈଙ୍କର୍ଯ୍ୟପରଲୁ (ପ୍ରସାଦ ନିର୍ମାଣକାରୀ ସେବାୟତ), ଦିବ୍ୟ ପ୍ରବନ୍ଧ କୈଙ୍କର୍ଯ୍ୟପରଲୁ (ଯେଉଁ ଆଲ୍‌ୱାର ବିରଚିତ ତାମିଲ୍ ଦିବ୍ୟ ପ୍ରବନ୍ଧ ପାଠ କରିଥାନ୍ତି), ବାହନ କୈଙ୍କର୍ଯ୍ୟପରଲୁ (ଯେଉଁମାନେ ଭଗବାନଙ୍କୁ କାନ୍ଧରେ ବୋହି ନେଇଥାନ୍ତି ଯଥା- ବିମାନ ବଡୁସେବକ) ଇତ୍ୟାଦି ଉଲ୍ଲେଖନୀୟ । ପୁରୀରେ ରଥଯାତ୍ରା ସମୟରେ ଯେଭଳି କେତେକ ସ୍ମରଣରେ କିଛି କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହୋଇଥାଏ, ଯଥା- ଦାସିଆବାଉରୀର ନଡ଼ିଆ, ବଳରାମ ଦାସଙ୍କର ବାଲିରଥ କାହାଣୀ - ଇତ୍ୟାଦି ଠିକ୍ ସେହିଭଳି ତିରୁପତିର ବ୍ରହ୍ମୋତ୍ସବ ସମୟରେ ମହିଳାଭକ୍ତ ଅଲ୍‌ୱାର ଗୋଦାଦେବୀଙ୍କ ଉପାଖ୍ୟାନକୁ ସ୍ମରଣ କରାଯାଇଥାଏ । ଗୋଦାଦେବୀ ଜଣେ ମହିଳା ଅଲ୍‌ୱାର ଭକ୍ତ ଥିଲେ । ତାଙ୍କର ଜନ୍ମ ତାମିଲନାଡୁର ମଦୁରାଇ ଜିଲ୍ଲାର ଶ୍ରୀବିଲ୍ଲିପୁତ୍ତୁର୍ ଗ୍ରାମରେ ହୋଇଥିଲା । ତାଙ୍କର ପିତାଙ୍କର ନାମ ବିଷ୍ଣୁଚିତ୍ତ । ପିତା ପ୍ରତିଦିନ ପୁଷ୍ପ ସଂଗ୍ରହ କରି ମାଳାଗୁନ୍ଥି ପ୍ରଭୁ ବେଙ୍କଟେଶ ସ୍ୱାମୀଙ୍କ ନିକଟକୁ ପଠାଇଥାନ୍ତି । କିନ୍ତୁ ସେହି ମାଳା ପଠାଇବା ପୂର୍ବରୁ ପିତାଙ୍କର ଅଗୋଚରରେ ଗୋଦାଦେବୀ ଅତି ଆଦରରେ ସେଗୁଡ଼ିକୁ ପିନ୍ଧି ପକାଇ କାଢ଼ି ଦେଇଥାଏ । ଏକଦା ବିଷ୍ଣୁଚିତ୍ତ ଏକଥା ଦେଖି ଦେଲେ ଏବଂ ଠାକୁରଙ୍କୁ ଅର୍ପଣ ହେବା ପୂର୍ବରୁ ଫୁଲମାଳାକୁ ସେ ନିଜେ ପିନ୍ଧି ଦେଇଥିବାରୁ ତା' ଉପରେ ଖୁବ୍ ବିରକ୍ତ ହୋଇ ଆଉ ସେ ଫୁଲମାଳା ଭଗବାନଙ୍କ ନିକଟକୁ ପଠାଇଲେ ନାହିଁ । ନିଜର ଭକ୍ତ ଗୋଦାଦେବୀଙ୍କ ମନରେ ଦୁଃଖ ହେବାରୁ ଭଗବାନ ଶ୍ରୀନିବାସ ସ୍ୱପ୍ନରେ ପ୍ରଧାନ ଅର୍ଚ୍ଚକଙ୍କୁ କହିଲେ ଯେ ବ୍ରହ୍ମୋତ୍ସବର ପଞ୍ଚମ ଦିନରେ ଅନୁଷ୍ଠିତ ଗରୁଡ଼ବାହନ ସେବା ଅବସରରେ ନିଜ ଭକ୍ତ ଗୋଦାଦେବୀଙ୍କ ଦ୍ୱାରା ପିନ୍ଧା ଯାଇଥିବା ମାଳା ଯଦି ତାଙ୍କୁ ସମର୍ପଣ କରାନଯାଏ ତେବେ ତାଙ୍କର ଯାତ୍ରା ସମ୍ପୂର୍ଣ୍ଣ ହେବ ନାହିଁ । ତତ୍‌କ୍ଷଣାତ୍ ପ୍ରଧାନ ଅର୍ଚ୍ଚକ ତାହା ଗୋଦାଦେବୀଙ୍କର ପିତା ବିଷ୍ଣୁଚିତ୍ତଙ୍କୁ ଜଣାଇଦେଲେ ଏବଂ ସେହିଦିନଠାରୁ ବ୍ରହ୍ମୋତ୍ସବ ସମୟରେ ତାମିଲନାଡୁର ମଦୁରାଇରୁ ଗୋଦାଦେବୀଙ୍କର ପିନ୍ଧାମାଳା ତିରୁମଲ୍ଲକୁ ଆଜି ପର୍ଯ୍ୟନ୍ତ ଆସିଥାଏ ଏବଂ ଭଗବାନଙ୍କ ଯାତ୍ରା ସମ୍ପୂର୍ଣ୍ଣ ହୋଇଥାଏ । ଏହି ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଏବଂ ଏହାଦ୍ୱାରା ଭଗବାନ କେବଳ ଭକ୍ତିଦ୍ୱାରା ହିଁ ସନ୍ତୁଷ୍ଟ ଓ ସୁଲଭ - ତାହା ପ୍ରତିପାଦିତ ହୋଇଥାଏ । ଆହୁରି ଉଲ୍ଲେଖନୀୟ ଯେ ରଥଯାତ୍ରାରେ ଏହି ମାଳାକୁ ନେଇ ଭଗବାନଙ୍କର ମୂଳ ବିଗ୍ରହରେ ପିନ୍ଧା ଯାଇଥାଏ ।

ଉଭୟ ଜଗନ୍ନାଥ ଏବଂ ଭେଙ୍କଟନାଥ ଦୟାସିନ୍ଧୁ । ଏକପକ୍ଷରେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଶଙ୍କରାଚାର୍ଯ୍ୟ ଜଗନ୍ନାଥାଷ୍ଟକ ପ୍ରଣୟନ କରି ତାଙ୍କୁ 'ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତୟା' କହିଥିବା ସମୟରେ ବିଶିଷ୍ଟ ଦାର୍ଶନିକ ଓ ଭକ୍ତ ଶ୍ରୀନିବାସଙ୍କ ଉଦ୍ଦେଶ୍ୟରେ 'ଦୟାଶତକ' ରଚନାକରି ତାଙ୍କୁ ଦୟାର ଅବତାର ଭାବରେ ବର୍ଣ୍ଣନା କରିଛନ୍ତି ।

ପରମ୍ପରା ଅନୁସାରେ ଉଭୟତ୍ର ବିଶିଷ୍ଟ ଦ୍ୱୈତ ବେଦାନ୍ତର ପ୍ରବର୍ତ୍ତକ ରାମାନୁଜାଚାର୍ଯ୍ୟ ରଥଯାତ୍ରା ବା ବ୍ରହ୍ମୋତ୍ସବ ସମୟର ଅନେକ ନୀତି ଓ ରୀତି ପ୍ରଚଳନ କରିଛନ୍ତି । ପୂର୍ବରୁ ବଡ଼ଦାଣ୍ଡକୁ 'ମାଳିନୀ' ନାମକ ଏକ ନଦୀ ଦୁଇଭାଗରେ ବିଭକ୍ତ କରୁଥିବାରୁ ନଦୀର ଉଭୟପାର୍ଶ୍ୱରେ ତିନି ତିନି ଗୋଟି ୬ଟି ରଥର ନିର୍ମାଣ କରାଯାଇ ଶ୍ରୀଜୀଉମାନଙ୍କର ରଥଯାତ୍ରା ସମାହିତ ହେଉଥିଲା । କିନ୍ତୁ ରାମାନୁଜଙ୍କର ପରାମର୍ଶକ୍ରମେ ତାହା ଅଶାସ୍ତ୍ରୀୟ ବୋଲି ବିବେଚନା କରାଯାଇ ମାଳିନୀ ନଦୀକୁ ପୋତା ଯାଇଥିଲା ଏବଂ ତିନିଗୋଟି ରଥ ନିର୍ମାଣର ପରମ୍ପରା ଆରମ୍ଭ ହୋଇଥିଲା ।

ବର୍ତ୍ତମାନ ଆଲୋଚନାର ବିଷୟ - ଶ୍ରୀଜୀଉଙ୍କ ଦାରୁବିଗ୍ରହ କେବେଠାରୁ ଓ କାହିଁକି କରାଗଲା ଏବଂ ରଥରେ ପ୍ରସ୍ତରମୂର୍ତ୍ତି ପରିବର୍ତ୍ତେ ଦାରୁବିଗ୍ରହମାନଙ୍କର ଯାତ୍ରା କେବେଠାରୁ ଆରମ୍ଭ ହେଲା ? ଏହା ଏକ ଅସମାହିତ ପ୍ରଶ୍ନ । ପୁରାଣର ମତ ଭିନ୍ନ । ଐତିହାସିକଙ୍କ ମତ ଭିନ୍ନ । ଶାସ୍ତ୍ରୀୟତତ୍ତ୍ୱ ଅନୁସାରେ ରଥଯାତ୍ରାର ପରମ୍ପରା ବହୁ ପ୍ରାଚୀନ । ବେଦ, ଉପନିଷଦ ପ୍ରଭୃତିରେ ରଥର ବର୍ଣ୍ଣନା ରହିଛି । ଯଥା- 'ଆକୃଷ୍ଣେନ ରଜସା ... ରଥେନ ଦେବୋ ଯାତି' ଅଥବା 'ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ' - ଇତ୍ୟାଦି । କେତେକ ଐତିହାସିକଙ୍କ ମତରେ ଲାଙ୍ଗୁଳା ନରସିଂହଦେବ କୋଣାର୍କଠାରେ ସୂର୍ଯ୍ୟ ମନ୍ଦିର ସ୍ଥାପନ କରିବା ପରେ ଓଡ଼ିଶାରେ ରଥଯାତ୍ରାର ପରମ୍ପରା ଆରମ୍ଭ ହେଲା, କାରଣ କୋଣାର୍କ ମନ୍ଦିର ହିଁ ଏକ 'ରଥ' (ସୂର୍ଯ୍ୟଙ୍କର ରଥ) । ଅନେକଙ୍କ ମତରେ ବୌଦ୍ଧ ପରମ୍ପରା ଅନୁସାରେ ଭଗବାନ ବୁଦ୍ଧଙ୍କର ନଖଦନ୍ତକୁ ପରିଭ୍ରମଣ କରାଇଥିବା ଉଦ୍ଦେଶ୍ୟରେ ଯେଉଁ ରଥଯାତ୍ରାର ଆରମ୍ଭ ହୋଇଥିଲା ତଦ୍‌ଦ୍ୱାରା ଜଗନ୍ନାଥଙ୍କର ରଥଯାତ୍ରା ପ୍ରଭାବିତ । ପୂର୍ବରୁ ଛୋଟିଆ ରଥରେ ପୂର୍ଣ୍ଣାବୟବ ପ୍ରସ୍ତର ମୂର୍ତ୍ତିକୁ ନେବା ଆଣିବା କରିବା କଷ୍ଟସାଧ ହେବାରୁ ଶ୍ରୀଜୀଉମାନଙ୍କର ଦାରୁବିଗ୍ରହ ନିର୍ମାଣ କରାଯାଇ ଦ୍ୱାଦଶ ବା ତ୍ରୟୋଦଶ ଶତାବ୍ଦୀରୁ ଗଙ୍ଗବଂଶର ରାଜାମାନଙ୍କର





ରାଜତ୍ୱକାଳରୁ ବିଧିବଦ୍ଧ ଭାବରେ ଦାରୁବିଗ୍ରହମାନଙ୍କର ରଥଯାତ୍ରା ଆରମ୍ଭ ହେବା କଥା କେତେକ ଐତିହାସିକ କହନ୍ତି । ସେମାନଙ୍କ ମତରେ ଗଙ୍ଗବଂଶର ରାଜାମାନେ ଯେହେତୁ ଦକ୍ଷିଣରୁ ଯାଇ ଓଡ଼ିଶାରେ ରାଜତ୍ୱ କରିଥିଲେ, ତେଣୁ ଦକ୍ଷିଣରେ ପ୍ରବର୍ତ୍ତିତ 'ବ୍ରହ୍ମୋତ୍ସବ'ଦ୍ୱାରା ପୁରୀର 'ରଥୋତ୍ସବ' ବହୁଧା ପ୍ରଭାବିତ ହୋଇପାରିଥାଏ । ପୁନଶ୍ଚ ଶ୍ରୀମନ୍ଦିରର ନିର୍ମାତା ହେଉଛନ୍ତି ଦ୍ୱାଦଶ ଶତାବ୍ଦୀର ଗଙ୍ଗରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ । ଶିଳାଲେଖରେ ଅଛି - 'ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତେଃ ଚକ୍ରେ[illegible]ଂ ଗଙ୍ଗେଶ୍ୱରଃ ।' ତାଙ୍କର ପତ୍ନୀଙ୍କ ନାମଥିଲା ଗୋଣ୍ଡଚୋଡ଼ । ତାଙ୍କର ନାମାନୁସାରେ ଗୁଣ୍ଡିଚା ଯାତ୍ରାର ଆରମ୍ଭ କରାଯାଇଛି ।

ଓଡ଼ିଶା ଏବଂ ଦକ୍ଷିଣର ପରମ୍ପରା ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ଏକଦା ଓଡ଼ିଶାର ରାଜାମାନେ ଆନ୍ଧ୍ର ଓ କର୍ଣ୍ଣାଟକ ପ୍ରଭୃତି ରାଜ୍ୟର ଅନେକ ଦୂରପର୍ଯ୍ୟନ୍ତ ଅବସ୍ଥିତ ସ୍ଥାନମାନଙ୍କରେ ବିଜୟ ହାସଲ କରି ଶାସନ କରୁଥିବାର ପ୍ରମାଣ ଇତିହାସରୁ ମିଳେ । କାଞ୍ଚିବିଜୟ କଥା ମଧ୍ୟ କିମ୍ବଦନ୍ତୀ କହେ । ସେହିପରି ଆନ୍ଧ୍ର ବା ଦକ୍ଷିଣର ରାଜାମାନେ ମଧ୍ୟ ଓଡ଼ିଶାକୁ ଅଧିକାର କରି ଶାସନ କରିଥିବାର ପ୍ରମାଣ ଇତିହାସରୁ ମିଳିଥାଏ । ଫଳରେ ଭାଷା, ଭାବ, ସାହିତ୍ୟ, ସଂସ୍କୃତି, ଧର୍ମ ଓ ପରମ୍ପରାର ଆଦାନପ୍ରଦାନ ହେବା ସ୍ୱାଭାବିକ । ଶ୍ରୀଜଗନ୍ନାଥ ମନ୍ଦିରରେ ତିରୁପତି ଭେଙ୍କଟେଶଙ୍କର ମୂର୍ତ୍ତି ଏବଂ ଭେଙ୍କଟେଶ ସ୍ୱାମୀଙ୍କ ମନ୍ଦିର ଦ୍ୱାରଦେଶରେ ରାଜା ପ୍ରତାପରୁଦ୍ର ଦେବଙ୍କର କନ୍ୟା ତଥା କୃଷ୍ଣ ଦେବରାୟଙ୍କର ପତ୍ନୀ ଜଗନ୍ମୋହିନୀ ତୁକ୍କାଙ୍କର ପ୍ରତିମୂର୍ତ୍ତି ରହିଥିବା ବିଷୟକୁ ସମସ୍ତେ ସ୍ୱଚକ୍ଷୁରେ ଦେଖିଥାନ୍ତି । ପୁରୀର ଲକ୍ଷ୍ମୀମନ୍ଦିର ଶ୍ରୀରାମାନୁଜାଚାର୍ଯ୍ୟଙ୍କ ଦ୍ୱାରା ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଏବଂ ସେଠାରେ ଦ୍ୱାଦଶ ଆଲ୍‌ୱାରଙ୍କର ଚିତ୍ର ଥିବା ବିଷୟ ସମସ୍ତେ ଜାଣନ୍ତି । ଶ୍ରୀଜଗନ୍ନାଥଙ୍କର ମହିମା ବିଷୟରେ ଓଡ଼ିଶାରେ ଯେତିକି ସଂସ୍କୃତ ବା ଓଡ଼ିଆ ଭାଷାରେ କାବ୍ୟ କବିତା ଲେଖାଯାଇଅଛି ସେହିଭଳି ମଧ୍ୟ ଆନ୍ଧ୍ରରେ ତେଲୁଗୁଭାଷା ଓ ସଂସ୍କୃତରେ ଲେଖାଯାଇଥିବା କାବ୍ୟ କବିତା କିଛି କମ୍ ନୁହେଁ । **ଜଗନ୍ନାଥଙ୍କ ବିଷୟରେ ଓଡ଼ିଆରେ ଯେଉଁଭଳି 'ମାଦଳାପାଞ୍ଜି' ଲେଖାଯାଇଅଛି, ସେହିଭଳି ତେଲୁଗୁରେ 'ଜଗନ୍ନାଥସ୍ଥଳ ବୃତ୍ତାନ୍ତମ୍' ମଧ୍ୟ ଲେଖାଯାଇଛି । ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଥମ ଜଗନ୍ନାଥ ସୁପ୍ରଭାତ ସ୍ତୋତ୍ର ଆନ୍ଧ୍ରର ଜଣେ ସଂସ୍କୃତ ପଣ୍ଡିତ ଲେଖିଥିବାର ବିଷୟ ନିକଟରେ ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ ତିରୁପତି ପକ୍ଷରୁ ପ୍ରକାଶିତ ପୁସ୍ତକରୁ ଜଣାଯାଏ ।** ତେଣୁ ଉଭୟଙ୍କର ବିଭିନ୍ନ ଦୃଷ୍ଟିରୁ ସମ୍ପର୍କ ଅତ୍ୟନ୍ତ ଗମ୍ଭୀର । କେତେକ ଜଗନ୍ନାଥ ଏବଂ ଭେଙ୍କଟନାଥ ମଧ୍ୟ ଦୁଇଭାଇ ବୋଲି କହି ଶାସ୍ତ୍ରୀୟ ପ୍ରମାଣ ଦେଇଥାନ୍ତି । ଏହି ଦୃଷ୍ଟିରୁ ବିବେଚନା କଲେ ଶେଷାଦ୍ରିର 'ବ୍ରହ୍ମୋତ୍ସବ' ଓ ନୀଳାଦ୍ରିର 'ରଥୋତ୍ସବ' ଉଭୟ ପରିପୂରକ ଓ ଅନୁପୂରକ ମଧ୍ୟ, ଯେହେତୁ ଉଭୟ ଶେଷାଚଳ ଓ ନୀଳାଚଳ ଗରିମାମୟ ଓ ମହିମାମୟ ତୀର୍ଥକ୍ଷେତ୍ର ।

କୁଳପତି
ରାଷ୍ଟ୍ରୀୟ ସଂସ୍କୃତ ବିଶ୍ୱବିଦ୍ୟାଳୟ
ତିରୁପତି, ଆନ୍ଧ୍ରପ୍ରଦେଶ

---

# ଉତ୍କଳପ୍ରାଣ ଜଗନ୍ନାଥ

ଶୈଳେନ୍ଦ୍ର ନାରାୟଣ ଷଡଙ୍ଗୀ

ଉତ୍କଳ ପ୍ରଦେଶେ ତୁମରି ପ୍ରସଙ୍ଗ
ଉଠେ ଯେବେ ମହାବାହୁ,
ଉତ୍କଳୀୟ ପ୍ରାଣେ ଉତ୍କଳୀୟ ମନେ
ଝଡ଼ ବହେ ଚାହୁଁ ଚାହୁଁ ।

ଉତ୍କଳର ନେତା ଜଗତ କରତା
ରହିଗଲେ ଉପବାସ,
ଉତ୍କଳର ବାସୀ ମନ ଗହନରେ
ଚିନ୍ତା କରେ ସର୍ବନାଶ ।

ଉତ୍କଳ ରାଇଜେ ତୁମରି ମନ୍ଦିରେ
ଘଟିଗଲେ ଅଘଟଣ,
ଉତ୍କଳରେ ନୁହେଁ ସାରା ଜଗତରେ
କାନ୍ଦଇ ଭକତ ପ୍ରାଣ ।

ଉତ୍କଳରେ ବିଜେ କରି ହେ ଠାକୁର
ତୁମେ ଜଗତର ନାଥ,
ଉତ୍କଳବାସୀଙ୍କ ପରମ ସୁହୃଦ
ପରମାତ୍ମା ପ୍ରାଣନାଥ ।

ଉତ୍କଳର ପ୍ରାଣ ଉତ୍କଳର ଧନ
ମହାପ୍ରଭୁ ମହୀୟାନ,
ଉତ୍କଳ ଲୋକଙ୍କୁ ସାହା ହୁଅ ସଦା
ଦୀନବନ୍ଧୁ ଜନାର୍ଦ୍ଦନ ।

ମୁଖ୍ୟ ପ୍ରଶାସକ, ଶ୍ରୀମନ୍ଦିର
ପୁରୀ







# ଶ୍ରୀମନ୍ଦିରରେ ଦିବ୍ୟସ୍ପନ୍ଦନ

ମହୀମୋହନ ତ୍ରିପାଠୀ

ଭାରତର ଏକ ମହାନ୍ ସନ୍ଥ ଯୋଗୀଶ୍ୱର କାଳୀପଦ (ଖ୍ରୀ:୧୯୦୨-୧୯୬୬) କହିଥିଲେ ଯେ ଶ୍ରୀକ୍ଷେତ୍ର ପୁରୀ ହେଉଛି ମହାଧାମ, ଦାରୁବ୍ରହ୍ମଧାମ । ଉଚ୍ଚକୋଟୀର ବ୍ରହ୍ମବିଦ୍ ସେଠାକୁ ଗଲେ ଓ ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ ତାଙ୍କର ଶରୀର ଅସାଡ଼ ହୋଇଯିବ ! ଯୋଗୀଶ୍ୱର କାଳୀପଦଙ୍କ ପ୍ରମୁଖ ଶିଷ୍ୟା ରାଣୀ ଭଟ୍ଟାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲାପରେ କହିଥିଲେ ଯେ, ପୁରୀଧାମର ଏହି ତିନି ବିଗ୍ରହ ସତ୍, ଚିତ୍ ଏବଂ ଆନନ୍ଦର ବା ପରଂବ୍ରହ୍ମଙ୍କର ପ୍ରତୀକ ମୂର୍ତ୍ତି । ଏହି ତିନୋଟି ନିରାକାର ବ୍ରହ୍ମର ପ୍ରତୀକ । ପୁରୀ ମନ୍ଦିର ଗାତ୍ରରେ ଅପୂର୍ବ ମୂର୍ତ୍ତିମାନ ଖୋଦିତ ହୋଇଅଛି । ଯେଉଁମାନେ ଏସବୁ ମୂର୍ତ୍ତି ତିଆରି କରିଛନ୍ତି ସେମାନେ କ'ଣ ତିନୋଟି ପୂର୍ଣ୍ଣାଙ୍ଗ ଦେବମୂର୍ତ୍ତି ତିଆରି କରି ପାରିନଥାନ୍ତେ ? ଅନାୟସେ କରିପାରିଥାନ୍ତେ । ନିରାକାର, ବ୍ରହ୍ମରୂପ ପରିଗ୍ରହ କରି ମର୍ତ୍ତ୍ୟକୁ ଆସିଛନ୍ତି ! ତା'ର ବ୍ୟଞ୍ଜନା ଦାରୁବ୍ରହ୍ମ ମନ୍ଦିରରେ ଫୁଟି ଉଠିଛି । ସେଥିପାଇଁ ପୁରୀକୁ ମହାଧାମ କୁହାଯାଏ ।

ଯୋଗୀଶ୍ୱର କାଳୀପଦ ଅନେକଥର ପୁରୀ ଆସିଥିଲେ ମଧ ଶ୍ରୀମନ୍ଦିରକୁ ଯାଉନଥିଲେ । ଥରେ ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ବାଧବାଧକତାରେ ତାଙ୍କ ସହିତ ଶ୍ରୀମନ୍ଦିରକୁ ଗଲେ । ଦର୍ଶନ ସାରି ଫେରିଲାବେଳେ ଦେଖାଗଲା ଯୋଗୀଶ୍ୱରଙ୍କ ଭାବାବିଷ୍ଟ ଓ ଅଭୁତପୂର୍ବ ମୂର୍ତ୍ତି ! ତାଙ୍କ ଦେହର ରଙ୍ଗ ହୋଇ ଉଠିଲା ତାମ୍ରାଭ । ଚକ୍ଷୁଦ୍ୱୟରେ ଅପୂର୍ବ ଜ୍ୟୋତିର ଝଲକ । ଦିବ୍ୟ ଆବେଶରେ ଥରୁଥିଲା ଦେହ । ଶ୍ରୀମନ୍ଦିର ପରିସରର ପବିତ୍ର ଭୂମିରେ ସେ ଲୋଟି ପଡ଼ିଲେ । ପ୍ରତ୍ୟେକ ସ୍ଥାନରେ ଆରମ୍ଭ ହେଲା ତାଙ୍କର ସାଷ୍ଟାଙ୍ଗ ପ୍ରଣାମ ଓ ଗଡ଼ାଗଡ଼ି । ଚକଚକ ଧଳା ଖଦଡ଼ର ପଞ୍ଜାବୀ ଓ ଧୋତି ଧୂଳି ମଳିନ ହୋଇଗଲା । ଯୋଗୀଶ୍ୱରଙ୍କ ଏ ପ୍ରକାର ଭାବ ପ୍ରମତ୍ତ ଅବସ୍ଥା ଦେଖି ତାଙ୍କର ବନ୍ଧୁ ବିଚଳିତ ହୋଇଗଲେ । ସେ ଭାବିଲେ ଦର୍ଶନ ପାଇଁ ଯୋଗୀଶ୍ୱରଙ୍କୁ ବାଧ କରିନଥିଲେ ଭଲ ହୋଇଥାନ୍ତା ।

ଶ୍ରୀ ରାମକୃଷ୍ଣ ପରମହଂସ ପୁରୀ ଆସି ନଥିଲେ । ତାଙ୍କର ମହାପ୍ରୟାଣ ପରେ ମା' ସାରଦା ଦେବୀ ତିନିଥର ପୁରୀ ଆସି ମହାପ୍ରଭୁଙ୍କୁ ଦର୍ଶନ କରିଥିଲେ । ପ୍ରଥମ ଥର ଶ୍ରୀ ରାମକୃଷ୍ଣଙ୍କ ଏକ ଫଟୋକୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରାଇଥିଲେ । ତାଙ୍କ ମତରେ 'ଛାୟା ଓ କାୟା' ସମାନ । ମା' ସାରଦା ଦେବୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲାପରେ କହିଥିଲେ - 'ଜଗନ୍ନାଥଙ୍କୁ ଦେଖିଲି, ଯେପରି ପୁରୁଷ ସିଂହ ରତ୍ନବେଦୀ ଉପରେ ବସିଛନ୍ତି ଏବଂ ମୁଁ ଦାସୀ ହୋଇ ତାଙ୍କର ସେବା କରୁଛି ।' ଥରେ ମହାପ୍ରଭୁଙ୍କୁ ଶିବ ରୂପରେ ସେ ଦର୍ଶନ ଲାଭ କରିଥିଲେ ।

ଶ୍ରୀ ରାମକୃଷ୍ଣଙ୍କ ଅନ୍ୟତମ ପ୍ରମୁଖ ଶିଷ୍ୟ ସ୍ୱାମୀ ତୁରିୟାନନ୍ଦ (ଖ୍ରୀ:୧୮୬୩-୧୯୨୨) ପୂଜ୍ୟଗୁରୁଙ୍କ ମହାପ୍ରୟାଣ ପରେ ଅନେକଥର ପୁରୀ ଆସିଥିଲେ । ଜୁନ୍‌ମାସ ୧୯୧୭ରେ ସେ ପୁରୀ ଆସି ମାସାଧିକ କାଳ ଅବସ୍ଥାନ କରିଥିଲେ । ଅବସ୍ଥାନ କାଳରେ ତାଙ୍କର ବିବିଧ ଦିବ୍ୟ ଅନୁଭୂତି ହୋଇଥିଲା ।

ଦିନେ ଆକସ୍ମିକ ଭାବରେ ବାଇଶି ପାହାଚ ଉପରେ ତାଙ୍କର ସାକ୍ଷାତ ଘଟେ ଗୁରୁ ଶ୍ରୀ ରାମକୃଷ୍ଣଙ୍କ ସହିତ । ଲୋକାନ୍ତରିତ ଗୁରୁଙ୍କୁ ଦର୍ଶନ କରି ସେ ଆନନ୍ଦ ବିହ୍ୱଳିତ ହୋଇ ଲୋଟି ପଡ଼ିଲେ ତାଙ୍କ ସମ୍ମୁଖରେ । କିଛିକ୍ଷଣ ପରେ ପ୍ରକୃତିସ୍ଥ ହୋଇ ଗୁରୁଙ୍କ ପଦସ୍ପର୍ଶ କରିବା ପାଇଁ ହାତ ବଢ଼ାଇବା ବେଳକୁ ଗୁରୁଦେବ ଅଦୃଶ୍ୟ ହୋଇ ଯାଇଥିଲେ ।

ଆଉ ଦିନେ, ଶ୍ରୀମନ୍ଦିରରେ ସ୍ୱାମୀ ତୁରିୟାନନ୍ଦ ବାରମ୍ବାର ଶୁଣିବାକୁ ପାଇଲେ ମହାଜାଗତିକ ଓଁକାର ନାଦ ! ଶବ୍ଦବ୍ରହ୍ମ ଶ୍ରବଣ ସମୟରେ ତାଙ୍କର ମନେ ହେଲା ସତେ ଯେପରି ସେ ଶୂନ୍ୟରେ ଭାସମାନ ଅବସ୍ଥାରେ ରହିଛନ୍ତି ।

ପରମହଂସ ଯୋଗାନନ୍ଦଙ୍କ ପ୍ରଧାନ ଶିଷ୍ୟା ଏବଂ ଯୋଗଦା ସତ୍‌ସଂଘ ସୋସାଇଟି ଅଫ୍ ଇଣ୍ଡିଆର ଅଧକ୍ଷା ଶ୍ରୀ ଜୟାମାତା ତା.୭.୦୨.୧୯୫୯ରେ ଶ୍ରୀମନ୍ଦିରରେ ବିଭିନ୍ନ ଦେବଦେବୀଙ୍କୁ ଦର୍ଶନ କଲାବେଳେ ନିଜର ଅପୂର୍ବ ଆଧାତ୍ମିକ ଅନୁଭୂତି ଓ ସ୍ପନ୍ଦନ ଲିପିବଦ୍ଧ କରିଥିଲେ ଡାଏରୀରେ । ସେ ଲେଖିଥିଲେ - 'ମୋର ମନ୍ଦିର ପ୍ରବେଶ ମାତ୍ରେ ଏକ ଅଜଣା ଶକ୍ତି ମୋତେ କବଳିତ କରି ଦେଲା ଏବଂ ମୋର ଶରୀରବୋଧ ଲୋପ ହୋଇଯାଇ ସଚେତନଶୀଳତାର ଉର୍ଦ୍ଧ୍ୱଗତି ହୋଇଗଲା । ତା'ପରେ ଆରମ୍ଭ ହୁଏ ଏକ ଭୀଷଣ ଅନୁଭୂତି ! ମୋର ସଚେତନଶୀଳତାର ପ୍ରସାରଣଶୀଳ ବିଶାଳତା ଆଗରେ ମୋର ପାର୍ଥିବ ଶରୀରର କ୍ଷୁଦ୍ରତା ! ଆଉ ଅଧିକ ଲେଖିପାରୁନାହିଁ । ଏତିକି କହୁଛି ଯେ, ସେଦିନର ସେହି ଅନୁଭୂତି ପର୍ଯ୍ୟାୟକ୍ରମେ ଅନେକ ପବିତ୍ର ଅନ୍ତରସ୍ଥ ଅନୁଭୂତିର ଥିଲା ଆରମ୍ଭ ମାତ୍ର । ଯାହାକି ଅଦ୍ୟାବଧି ତିନି ସପ୍ତାହ ପରେ ମଧ ଅବ୍ୟାହତ ରହିଛି । ମନ୍ଦିରରୁ ଫେରିବା ପରେ ମୋର ମନ ଜଗତଠାରୁ ପ୍ରତ୍ୟାହୃତ ହୋଇଯାଇଛି । ଲାଗୁଛି ସତେ ଯେପରି ଏକ ଚଳଚ୍ଚିତ୍ର ଦେଖୁଛି ।'

ଏମ୍.-ଏ/୨, ବ୍ରିଟ୍ କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର-୧୨





# ଦାରୁବ୍ରହ୍ମ ଜଗନ୍ନାଥଙ୍କର ବିଶେଷତ୍ୱ

ଡାକ୍ତର କବି ପ୍ରସାଦ ମିଶ୍ର



ପରଂବ୍ରହ୍ମଙ୍କର ପରମ ପ୍ରକାଶ ଦାରୁବ୍ରହ୍ମ ଜଗନ୍ନାଥଙ୍କର ଯେଉଁ ସବୁ ବିଶେଷତ୍ୱ ଅଛି ତାହା ହିନ୍ଦୁଧର୍ମରେ ପୂଜିତ ତେତିଶକୋଟି ଦେବତାଙ୍କଠାରେ ମିଳେ ନାହିଁ । ତାହା ହିଁ ତାଙ୍କର ବିଶେଷତ୍ୱ ଏବଂ ସ୍ୱତନ୍ତ୍ରତା । ସଂକ୍ଷେପରେ ସେହି ବିଶେଷତ୍ୱଗୁଡ଼ିକ ଏଠାରେ ଦିଆଯାଉଛି, ଯାହାସବୁ ପାଠକମାନେ ଅବହିତ ହେବା ଉଚିତ୍ ।

୧. ଚତୁର୍ଦ୍ଧାମୂର୍ତ୍ତି କେବଳ ଏକମାତ୍ର ଦେବ ପରିବାର ଯେଉଁଠି ଭାଇ, ଭଉଣୀ ପୂଜା ପାଆନ୍ତି । ଅନ୍ୟ ସବୁକ୍ଷେତ୍ରରେ ସବୁ ମନ୍ଦିରରେ ପୁରୁଷ ପ୍ରକୃତି ବା ଦେବୀ ଶକ୍ତିଙ୍କର ପୂଜା ହୁଏ, ଯଥା- ସୀତାରାମ, ଶିବ, ପାର୍ବତୀ ଓ ବିଷ୍ଣୁ ଲକ୍ଷ୍ମୀ ଇତ୍ୟାଦି । କେବଳ ଜଗନ୍ନାଥ ସଂସ୍କୃତିରେ ମା' ଲକ୍ଷ୍ମୀ ବାହାରେ ଥାଇ ସ୍ୱତନ୍ତ୍ର ପୂଜା ପାଆନ୍ତି ଏବଂ ନିରୀହା, ସରଳା, ଅବଳା ସାନ ଭଉଣୀ ଭାବରେ ମା' ସୁଭଦ୍ରା ଦୁଇ ଭାଇଙ୍କ ମଧ୍ୟରେ ରହି ପୂଜା ପାଆନ୍ତି । ଏହା ବିଶ୍ୱ ଭ୍ରାତୃଭାବର ଓ ଭାଇ ଭଉଣୀଙ୍କ ସ୍ନେହ ବନ୍ଧନର ପରିଚୟ ଦିଏ ।

କବି ଉପେନ୍ଦ୍ର ଭଞ୍ଜ କହିଛନ୍ତି-

ସଙ୍କରଷଣ ଆପଣ ବେନିପାଶେ ବିଜେ
ସ୍ନେହୀ ବଡ଼ ଭଗ୍ନୀଠାରେ ମଧ୍ୟେ ସେ ବିରାଜେ ।
(ସୁଭଦ୍ରା ପରିଣୟ)

କେତେକ ମଧ୍ୟ ବିଶ୍ୱାସ କରନ୍ତି ଯେ ଶାପ ପାଇ ବ୍ରହ୍ମା କୌଣସିଠାରେ ପୂଜିତ ନ ହେଉଥିବାରୁ ବିଷ୍ଣୁ ତାଙ୍କୁ ସୁଭଦ୍ରା ରୂପ ଦେଇ ନିଜ ଗହଣରେ ରଖି ପୂଜା ଦିଆଉଛନ୍ତି ।

'ବ୍ରହ୍ମା ବସିବେ ମଧ୍ୟେ ସୁଭଦ୍ରା ରୂପ ଧରି ।'
(ସାରଳା ମହାଭାରତ)

ଅନ୍ୟଥା ଜଗନ୍ନାଥ ପରିବାରରେ ସୁଦର୍ଶନ ଚକ୍ର ରୂପରେ ନଥାଇ ଏକ ସିଧା ଦଣ୍ଡରୂପରେ ପୂଜିତ । ଏଇଟା ମଧ୍ୟ ବୈଶିଷ୍ଟ୍ୟପୂର୍ଣ୍ଣ । ଯେ କୌଣସି ଚକ୍ରାକାର ବା ଗୋଲାକାର ବସ୍ତୁର ମଧ୍ୟରେ ଥିବା ଦଣ୍ଡ ଚକ୍ରର ମୂଳ । ତେଣୁ ମୂଳାଧାର ରୂପେ ସୁଦର୍ଶନ ଚକ୍ର ନ ହୋଇ ସଳଖ ଦଣ୍ଡ ହୋଇଯାଇଛି ।

୨. ଦ୍ୱିତୀୟତଃ, 'ଜଗନ୍ନାଥ ପରିବାର'ରେ ସମସ୍ତେ ମୃତ୍ୟୁବରଣ କରନ୍ତି ଏବଂ 'ନବକଳେବର' ରୂପରେ ପୁନଃଜନ୍ମ ଲାଭ କରନ୍ତି । ଅନ୍ୟ କୌଣସି ଦେବତାଙ୍କର ପରମ୍ପରାରେ ଏହି ଜନ୍ମମୃତ୍ୟୁ ଏବଂ ପୁନଃଜନ୍ମର ବିଧାନ ନାହିଁ । ଗୀତାର 'ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ'ର ସତ୍ୟତା ପ୍ରତିପାଦନ କରି ଏହି ବିଚିତ୍ର ପରମ୍ପରା ଗଢ଼ିଉଠିଛି । ଆଜିସୁଦ୍ଧା 'ନବକଳେବର' ଏବଂ 'ବ୍ରହ୍ମ ପରିବର୍ତ୍ତନ'ର ରହସ୍ୟ ରୀତିନୀତି ଏବଂ ସୁଆର,, ଦଇତାପତିମାନଙ୍କର 'ନବକଳେବର' ପରେ ଅନ୍ତ୍ୟେଷ୍ଟିକ୍ରିୟା ପାଳନର ରହସ୍ୟ କେହି ସମ୍ପୂର୍ଣ୍ଣ ରୂପେ ବୁଝିପାରି ନାହାନ୍ତି । ଯୁଗ ଯୁଗ ଧରି ଜଗନ୍ନାଥଙ୍କର ପୂର୍ବ ତ୍ୟକ୍ତ ବିଗ୍ରହ ସବୁ କୋଇଲି ବୈକୁଣ୍ଠରେ ପୋତା ହୋଇ ଆସୁଛନ୍ତି ।

୩. ଜଗନ୍ନାଥ ପୁରୁଷ ଅଥବା ସ୍ତ୍ରୀ ନୁହନ୍ତି । ସେ ଲିଙ୍ଗଭେଦର ଉର୍ଦ୍ଧ୍ୱରେ ଲିଙ୍ଗାତୀତ ପରଂବ୍ରହ୍ମ । ସେଥିପାଇଁ ସେ ପୁରୁଷ ହୋଇ ମଧ୍ୟ ସ୍ତ୍ରୀଙ୍କ ଭଳି ନୋଥଣୀ ପିନ୍ଧିଥାନ୍ତି ଏବଂ ଶାଢ଼ୀ ପିନ୍ଧନ୍ତି । ସେ ବାସ୍ତବରେ ରାଧାକୃଷ୍ଣଙ୍କର ସମ୍ମିଳିତ ଯୁଗଳ ମୂର୍ତ୍ତି । ବୈଷ୍ଣବମାନେ ତାଙ୍କୁ ଏହି ଯୁଗଳମୂର୍ତ୍ତି ଭାବରେ ପୂଜା କରନ୍ତି । ଉପେନ୍ଦ୍ର ଭଞ୍ଜ କହିଛନ୍ତି -

'ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୁନେ କେହୁ ଜାଣିବ ସଂସାରେ ।'

୪. ଛପନ ଭୋଗ ଏବଂ ସକାଳୁ ସଞ୍ଜ ଯାଏଁ ଅସଂଖ୍ୟ ରୀତିନୀତି ତଥା ବର୍ଷର ବା ଅନ୍ୟ କୌଣସି ବିଶିଷ୍ଟ ସମୟରେ ବିଭିନ୍ନ ପ୍ରକାର ବେଶ ଧାରଣ କରିବା ଜଗନ୍ନାଥଙ୍କର ବୈଶିଷ୍ଟ୍ୟ ଶହ, ଶହ ସଂଖ୍ୟକ ପ୍ରତ୍ୟେକ ନୀତିପାଇଁ ବଂଶାନୁକ୍ରମେ ଗୋଟିଏ, ଦୁଇଟି ବା ଅଧିକ ପରିବାର ନିଯୁକ୍ତ । ସେଥିପାଇଁ ମନ୍ଦିରରେ ଅସଂଖ୍ୟ ସେବକ, ପଣ୍ଡା, ସୁଆର, ଦଇତାପତି ଆଦି ନିୟୋଜିତ । ବେଶଭୂଷାରେ ଜଗନ୍ନାଥଙ୍କୁ





କେହି ବଳିଯିବ ନାହିଁ । ତାଙ୍କର 'ଅବସରବେଶ' ଏବଂ 'ବଣଭୋଜି ବେଶ' ଇତ୍ୟାଦି ସହ ବିରଳ 'ନାଗାର୍ଜୁନ ବେଶ', 'ରଘୁନାଥ ବେଶ' ଇତ୍ୟାଦିର ଅଦ୍ଭୁତ ସଂଯୋଗ ଓ ସମାହାର ସୃଷ୍ଟି ହୋଇପାରିଛି । ଏହା ଏକ ବର୍ଣ୍ଣାଢ଼୍ୟ, ଅତି ବିଶିଷ୍ଟ ପରମ୍ପରା । ଗୋଟିଏ ଗୋଟିଏ ବିଶେଷ ବେଶ ଅନେକ ବର୍ଷ ବ୍ୟବଧାନରେ ହୁଏ, ଯଥା- ରଘୁନାଥ ବେଶ, ନାଗାର୍ଜୁନ ବେଶ ଇତ୍ୟାଦି ।

୫. ଜଗନ୍ନାଥ ମନ୍ଦିର ଏକମାତ୍ର ମନ୍ଦିର ଯେଉଁଠି ଆରାଧ୍ୟ ଦେବତାଙ୍କୁ ନଜାଣି ମନ୍ଦିର ତିଆରି ହୋଇଥିଲା । ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ତିଆରି କରିବା ପରେ ଆରାଧ୍ୟ ଦେବତାଙ୍କୁ ଖୋଜିଲେ (ବିଶ୍ୱାବସୁ ବିଦ୍ୟାପତିଙ୍କର କାହାଣୀ) ଏହା ଏକ ବିଚିତ୍ର ଏବଂ ଅନନ୍ୟ ସାଧାରଣ କାହାଣୀ ।

୬. ଜଗନ୍ନାଥଙ୍କର ବିଗ୍ରହ ସାକାର- ନିରାକାର, ନିର୍ଗୁଣ-ସଗୁଣ, ଅରୂପଅସ୍ୱରୂପ ଅସୀମ ସସୀମର ଅଦ୍ଭୁତ ସମନ୍ୱୟରେ, ବିରୋଧାଭାଷ ତତ୍ତ୍ୱରେ ଗଠିତ । ସେ ଅବତାରୀ ଏବଂ ପରଂବ୍ରହ୍ମ ହୋଇଥିବାରୁ ଏ ସବୁର ବହୁ ଊର୍ଦ୍ଧ୍ୱରେ ପୂଜିତ । ସେ ଯେପରି ନିରାକାର, ସେହିପରି ସାକାର, ଯେପରି ନିର୍ଗୁଣ ନିର୍ବିକାର ସେହିପରି ସଗୁଣ । ଏହା ହିଁ ମୂର୍ତ୍ତିମାନଙ୍କର ବିଶେଷତ୍ୱ । ତେଣୁ ଜଗନ୍ନାଥଙ୍କର ମୂର୍ତ୍ତି ୩୩ କୋଟି ଦେବତାଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

୭. ଜଗନ୍ନାଥଙ୍କର 'ଚକାଡୋଳା' ଅତି ବିଚିତ୍ର-ବିସ୍ମୟ । ଅନ୍ୟ କୌଣସି ଦେବଦେବୀଙ୍କର ଏଭଳି ଆଖିପତା ଏବଂ ଭୂଲତାବିହୀନ ଗୋଲାକାର ଚକ୍ଷୁଯୁଗଳ ସଦା ଉନ୍ମୁକ୍ତ ଅବସ୍ଥାରେ ନାହିଁ । ଏହା ଅତ୍ୟନ୍ତ ତତ୍ତ୍ୱପୂର୍ଣ୍ଣ ଏବଂ ମାର୍ମିକ । ତାଙ୍କର 'ଚକାଡୋଳା' ଭକ୍ତଜନଙ୍କର ପ୍ରାଣ ଏବଂ ଆତ୍ମା । ସଦା ଉନ୍ମୁକ୍ତ, ଚିରକାଳ ଅନୁଗ୍ରହରେ ପରିପୂର୍ଣ୍ଣ ।

୮. ଜଗନ୍ନାଥଙ୍କର ରୋଷେଇଶାଳ ଏବଂ ରୋଷ ପ୍ରକ୍ରିୟା ଅସାଧାରଣ । ଏଥିରେ ପ୍ରାୟ ଏକ ହଜାର ଲୋକ ନିୟୋଜିତ । ଜଳୀୟ ଉତ୍ତପ୍ତ ବାଷ୍ପରେ (ଷ୍ଟିମ୍ କୁକିଙ୍ଗ) ରୋଷେଇ ହୁଏ । ଅତ୍ୟନ୍ତ ସ୍ୱାଦିଷ୍ଟ ପ୍ରାୟ ୫୬ ପ୍ରକାରର ଭୋଗ ପ୍ରସ୍ତୁତ କରାଯାଏ ।

ପ୍ରତିଦିନ ପ୍ରାୟ ୧୦ ହଜାରରୁ ଅଧିକ ଏବଂ ପର୍ବପର୍ବାଣି ସମୟରେ ୫୦ ହଜାରରୁ ବା ଲକ୍ଷେ ଲୋକ ମଧ୍ୟ ଜଗନ୍ନାଥଙ୍କର ପ୍ରସାଦ (ମହାପ୍ରସାଦ) ସେବନ କରନ୍ତି । ଏତେ ଲୋକଙ୍କ ପାଇଁ ରୋଷେଇ କରିବାରେ ଜିନିଷ, ସବୁ ସରଞ୍ଜାମ, କାଠ, ପାଣିଠାରୁ ଆରମ୍ଭ କରି ଚାଉଳ, ପରିବା ପର୍ଯ୍ୟନ୍ତ କିପରି ବନ୍ଦୋବସ୍ତ କରାଯାଏ ତାହା ଏକ ବିଚିତ୍ର ବିସ୍ମୟ ।

ଭୋଗ ବୋହିବା ଲୋକ ମଧ୍ୟ ମୁହଁରେ ମୁଖାପିନ୍ଧି, ହାତରେ ସ୍ପର୍ଶ ନ କରି, ବାଟରେ କାହାଦ୍ୱାରା ନ ଅଟକି ସୁସ୍ଥ ପରମ୍ପରାରେ ଭୋଗ ମନ୍ଦିରକୁ ରୋଷେଇଶାଳାରୁ ପୂଜା ପାଇଁ ନିଅନ୍ତି । ଏହା ଏକ ଅତ୍ୟନ୍ତ ସୁସ୍ଥ ଏବଂ ବୈଜ୍ଞାନିକ ପ୍ରଥା ଏବଂ ପରମ୍ପରା ।

୯. ଜଗନ୍ନାଥଙ୍କର ରଥଯାତ୍ରା ପରମ୍ପରାରେ ତାଙ୍କ ରଥ ବଡ଼ଦାଣ୍ଡରେ ଥିବା ବେଳେ ଜାତି, ଧର୍ମ, ନିର୍ବିଶେଷରେ ଯେକୌଣସି ବ୍ୟକ୍ତି ତାଙ୍କର ଦର୍ଶନ ଲାଭ କରି, ସ୍ପର୍ଶ କରି ଆଲିଙ୍ଗନ ମଧ୍ୟ କରିପାରନ୍ତି । ସେ ପ୍ରକୃତରେ ରଥରେ 'ବାମନ ବତାରଁ ଧାରଣ କରି ପତିତପାବନ ହୋଇଯାଆନ୍ତି । ବଡ଼ଦାଣ୍ଡରେ ସହଦେବଙ୍କ ସମାଧି ପାଖରେ ତାଙ୍କର ରଥ ମଧ୍ୟ ଅଟକି ରହେ । ନିଜର ମାଉସୀଙ୍କ ଘରକୁ ଯାଇ ୮ ଦିନ ପରେ 'ସୁସ୍ଥ' ହୋଇ ବାହୁଡ଼ା ଯାତ୍ରାରେ ଫେରି ଆସିବା ଜଗନ୍ନାଥଙ୍କର ଏକ ବିଶିଷ୍ଟ ପରମ୍ପରା । ସ୍ନାନ ପୂର୍ଣ୍ଣିମାରେ ସ୍ନାନ କରି ଜଗନ୍ନାଥ ଜ୍ୱରାକ୍ରାନ୍ତ ହୋଇ ଧନ୍ୱନ୍ତରୀଙ୍କ ଦ୍ୱାରା 'ଚିକିତ୍ସିତ' ହେବା ଏକ ବିଚିତ୍ର ପରମ୍ପରା- ଦେବତ୍ୱରେ ମାନବିକତାର ଆରୋପ ।

୧୦. ଜଗନ୍ନାଥ 'ଶବର ଦେବତା' ହୋଇଥିବାରୁ ତାଙ୍କର ସବୁ ରୀତିନୀତି କେବଳ ବୈଦିକ ପରମ୍ପରାରେ ହୁଏ ନାହିଁ । ବୈଦିକ, ଶାସ୍ତ୍ରୀୟ ଏବଂ ଶବର ପରମ୍ପରାରେ ଅଦ୍ଭୁତ ସମନ୍ୱୟ ଘଟିଛି ଜଗନ୍ନାଥଙ୍କ ପୂଜାର୍ଚ୍ଚନାରେ । ସେ ଏ ଦୃଷ୍ଟିରୁ ସମଗ୍ର ହିନ୍ଦୁ ଦେବଦେବୀ ପରମ୍ପରାରେ ଅତ୍ୟନ୍ତ ବିଶିଷ୍ଟ ସ୍ଥାନର ଅଧିକାରୀ । ସେ ନିଶ୍ଚିତ ଭାବେ ସ୍ୱତନ୍ତ୍ର ଏବଂ ବିଶିଷ୍ଟତାର ଅଧିକାରୀ ।

ଅର୍ଦ୍ଧନିର୍ମିତ, ଅପୂର୍ଣ୍ଣ ଶରୀରରେ ସେ ବିରାଟ ତତ୍ତ୍ୱକୁ ପ୍ରକଟିତ କରିଛନ୍ତି । 'ଅବାଂଗ୍ ମନସ ଗୋଚର' ଅସୀମ, ଅବର୍ଣ୍ଣନୀ, ବୁଦ୍ଧି-ମାନସୋତ୍ତର ସତ୍ତାକୁ କିପରି ସ୍ୱରୂପ ବା ଆକାର ଦିଆଯାଇ ପାରିବ ? ଏହା ଅସମ୍ଭବ । ଏହି ଅସମ୍ଭବକୁ ସମ୍ଭବ କଲେ, 'ବିଶ୍ୱକର୍ମା' ଯେ ଦାରୁବ୍ରହ୍ମଙ୍କୁ ଦାରୁରୁ ସୃଷ୍ଟି କରିବାରେ ପ୍ରଥମ ବିଦ୍ଧାଣୀ । ଯେତେ ଯାହା କଲେ ବି ସମ୍ପୂର୍ଣ୍ଣତାକୁ, ଅସୀମକୁ ପ୍ରକଟ କରି ହେବନାହିଁ । ଆକାର ଦେଇ ହେବନାହିଁ । ସେଥିପାଇଁ ଚତୁର୍ଦ୍ଧାମୂର୍ତ୍ତିଙ୍କର ବିଗ୍ରହରେ ଅପୂର୍ଣ୍ଣତାରେ ଇଙ୍ଗିତ ଦିଆହୋଇଛି ମାନବର, କଳାକାରର ବିଫଳତା, ସୀମିତ ଶକ୍ତି । ଅମୂଲ୍ୟ ତଥ୍ୟ ପ୍ରକାଶ ପାଇଛି ସମ୍ପୂର୍ଣ୍ଣତାକୁ, ଅସୀମତାକୁ, ନିରାକାର, ନିର୍ଗୁଣ, ନିର୍ବିକାର ପରଂବ୍ରହ୍ମଙ୍କୁ ପ୍ରକାଶ କରିବାକୁ । ରୂପ ଦେବାକୁ ଚେଷ୍ଟାକଲେ କେବଳ ବିଫଳତା ହିଁ ସାରହେବ । ଧନ୍ୟ ଏ ପରମ ଗମ୍ଭୀର ତତ୍ତ୍ୱ ।

ପ୍ରଭୁ ଜଗନ୍ନାଥ ଅତ୍ୟନ୍ତ ରହସ୍ୟମୟ ଓ ବିଚିତ୍ର ଅଭିବ୍ୟକ୍ତି !

କଳିଙ୍ଗ ହସ୍‌ପିଟାଲ
ଭୁବନେଶ୍ୱର









# ମାନଭଞ୍ଜନ

ଡକ୍ଟର ବଳରାମ ଦାସ

(‘ହରିହର ବ୍ରହ୍ମା ସ୍ୱୟଂ ଅବତାର’ - ଏହି କବିତାର ବରେଣ୍ୟ କବି ଭାଗବତକାର ଜଗନ୍ନାଥ ଦାସଙ୍କୁ କୃତଜ୍ଞତାର ସହ ସମର୍ପିତ ।)

**ରା**ତି ସେତେବେଳକୁ କେତେ ହେବ କେଜାଣି ! ସାରା ଜଗତ ସୁପ୍ତ । କିନ୍ତୁ ଲକ୍ଷ୍ମୀଙ୍କ ଆଖିରେ ନିଦ ନାହିଁ । ପଲଙ୍କରେ ବାରମ୍ବାର କଡ଼ ଲେଉଟାଇ ଶୋଇବା ପାଇଁ ଯେତେ ଚେଷ୍ଟା କଲେ ବି ନିଦର ଚିହ୍ନବର୍ଣ୍ଣ ନଥିଲା । ମନ୍ଦିର ଗୁମୁଟରେ କେମିତି ଗୋଟାଏ ଅସ୍ୱସ୍ତିକର ନିରବତା । ଅବସନ୍ନ ଭାବରେ ଶେଯରୁ ଉଠି ଧୀର ପଦକ୍ଷେପରେ ମନ୍ଦିର ବାହାରକୁ ବାହାରି ଆସିଲେ ଲକ୍ଷ୍ମୀ । ତରଳ ଅନ୍ଧାର ମଧ୍ୟରେ ବୁଡ଼ିଯାଇଛି ଶ୍ରୀମନ୍ଦିର ଭିତର ବେଢ଼ା । ଲକ୍ଷ୍ମୀ ଆକାଶକୁ ଅନେଇଲେ । କେମିତି ନିବିଡ଼ ହୋଇ ଉଠିଛି ତା'ର ସାରାଦେହ । କାଁ-ଭାଁ ଗୋଟାଏ-ଅଧେ ତାରା ବ୍ୟତୀତ ସେ ନିବିଡ଼ତାରେ ଆଉ କିଛି ବ୍ୟତିକ୍ରମ ନଥିଲା । ଲକ୍ଷ୍ମୀ ପୁଣି ଥରେ ଚାରିଆଡ଼େ ନିଜର କ୍ଳାନ୍ତ ଦୃଷ୍ଟି ପହଁରେଇ ଆଣିଲେ । ସବୁଠାରେ ସେଇ ଅସ୍ୱସ୍ତିକର ନିଃଶବ୍ଦତା । ସବୁକିଛି ନିରବ ସ୍ତବ୍ଧ । ଜଗନ୍ନାଥ, ବଡ଼ଭାଇ ବଳରାମ ଓ ଭଉଣୀ ସୁଭଦ୍ରାଙ୍କ ସହିତ ରଥଯାତ୍ରାରେ ବାହାରି ଯାଇଥିବାରୁ ବଡ଼ ଦେଉଳ ଭିତରଟା ଯେମିତି ନିଷ୍ପନ୍ଦ ହୋଇଯାଇଥିଲା । ଗଭୀର ନିଃସଙ୍ଗତାବୋଧରେ ଅସ୍ଥିର ହେଉଥିଲେ ଲକ୍ଷ୍ମୀ । ସେ କିଛି ନଭାବି ହଠାତ୍ ମନ୍ଦିର ପାହାଚ ଉପରେ ବସି ପଡ଼ିଲେ । ମନ୍ଦିରରେ ଦେଢ଼ଶୂର କିମ୍ବା ଜଗନ୍ନାଥ ନାହାନ୍ତି । ସେଥିପାଇଁ ସେଇ ନିଃଶବ୍ଦ ନିସ୍ତବ୍ଧତା ଭିତରେ ବି ନିଜ ମନ୍ଦିର ପାହାଚ ଉପରେ ବସିବା ପାଇଁ ତାଙ୍କର କୌଣସି ସଂକୋଚ ନଥିଲା ।



ପ୍ରବଳ ଉତ୍ତେଜନା ଭିତରେ କଟିଯାଇଛି ଆଜି ସାରା ଦିନ । ପାହାଚ ଉପରେ ବସି ସେଇ ସବୁ ଅଭାବିତ ଘଟଣା କଥା ମନେ ପଡ଼ିଯିବା ମାତ୍ରେ ନିଜ ଭିତରେ ଖୁବ୍ ସଂକୁଚିତ ହୋଇ ପଡୁଥିଲେ ଲକ୍ଷ୍ମୀ । ଦିନର ସେ ଭୟଙ୍କର ଉତ୍ତେଜନା ସେତେବେଳକୁ ସ୍ତିମିତ ହୋଇଯାଉଥିଲା । ବୋଧହୁଏ ସେଇଥିପାଇଁ ନିଶାର୍ଦ୍ଧର ସେଇ ନରବ-ନିସ୍ତବ୍ଧ ମୁହୂର୍ତ୍ତରେ ଲକ୍ଷ୍ମୀଙ୍କ ଦୃଷ୍ଟି ସମ୍ମୁଖରେ ପୁଣି ଥରେ ଯେମିତି ଘଟିଯାଉଥିଲା - ଗତକାଲିଠାରୁ ଆଜିଯାଏଁ ଘଟିଯାଇଥିବା ଘଟଣାର ତିକ୍ତ ମଧୁର ଦୃଶ୍ୟରାଜି ... ।

ଗତକାଲି ରାତିରେ ଖୁବ୍ ବ୍ୟସ୍ତତା ଭିତରେ ବି ଅଳ୍ପ ସମୟ ପାଇଁ ତାଙ୍କ ପାଖକୁ ଆସିଥିଲେ ଜଗନ୍ନାଥ । ନେତ୍ର ଉତ୍ସବର ଯାବତୀୟ ବ୍ୟସ୍ତ କାର୍ଯ୍ୟକ୍ରମ ମଧ୍ୟରେ ଯେ ଜଗନ୍ନାଥ ତାଙ୍କୁ ଭୁଲି ଯାଇନାହାନ୍ତି, ସମୟ ପାଇବା ମାତ୍ରେ ତାଙ୍କ ପାଖକୁ ଛୁଟି ଆସିଛନ୍ତି - ଏଇକଥା ଭାବି ଲକ୍ଷ୍ମୀ ମନେ ମନେ ଖୁବ୍ ଆତ୍ମପ୍ରସାଦ ଲାଭ କରିଥିଲେ । ଏକ ଉଲ୍ଲସିତ ଆବେଗରେ ସେ ଜଗନ୍ନାଥଙ୍କୁ ନେଇ ପଲଙ୍କ ଉପରେ ବସାଇ ଦେଲେ ଓ ନିଜେ ଜଗନ୍ନାଥଙ୍କ ପାଖରେ ଖୁବ୍ ଘନିଷ୍ଠ ହୋଇ ବସି ବିଞ୍ଚଣାରେ ପଂଖା କରିବାକୁ ଲାଗିଲେ । ଜଗନ୍ନାଥ ଗଭୀର ସ୍ନେହରେ ଲକ୍ଷ୍ମୀଙ୍କର ହାତକୁ ନିଜ ହାତରେ ଜାବୁଡ଼ି ଧରି ଧୀର ସ୍ୱରରେ କହିଲେ - ‘ତମେ ତ ଜାଣିଛ ଲକ୍ଷ୍ମୀ, ଆସନ୍ତା କାଲି ଆମେ ରଥଯାତ୍ରାରେ ବାହାରିବୁ । ସେଇ କଥା ଜଣାଇଦେବା ପାଇଁ ବଡ଼ ଭାଇ ମୋତେ ତୁମ ପାଖକୁ ପଠାଇଛନ୍ତି ।’ ରଥଯାତ୍ରା କଥା ଶୁଣି ଲକ୍ଷ୍ମୀଙ୍କ ଭିତରେ ମେଘ ଘୋଟି ଯାଇଥିଲା । କିନ୍ତୁ ଯେତେବେଳେ ଜାଣିଲେ ଯେ ଜଗନ୍ନାଥ ନିଜେ ଆଗ୍ରହ କରି ତାଙ୍କର ପାଖକୁ ଆସିନାହାନ୍ତି । ବଡ଼ଭାଇ ତାଙ୍କୁ ପଠାଇବାରୁ ସେ ଆସିଛନ୍ତି, ସେତେବେଳେ ତାଙ୍କ ଭିତରେ ଘୋଟିଥିବା ସେ ମେଘ ବର୍ଷିବାକୁ ଆରମ୍ଭ କରିଦେଲା । ତାଙ୍କର ସବୁ କ୍ରୋଧ ଓ ଅସନ୍ତୋଷ ତାଙ୍କ ଫୁଲିଲା ନାକପୁଡ଼ା ଆଉ ତୀକ୍ଷ୍ଣ ଆଖିରୁ ସ୍ପଷ୍ଟ ବାରି ହୋଇ ପଡ଼ିଥିଲା । ସେ କିଛି ନ କହି ଜଗନ୍ନାଥଙ୍କ ହାତରୁ ନିଜ ହାତ ଖସାଇ ଆଣିବା ବେଳକୁ ଜଗନ୍ନାଥ ଆହୁରି ଜୋରରେ





ତାକୁ ଜାବୁଡ଼ି ଧରି କୋମଳ କଣ୍ଠରେ କହିଲେ - 'ଶୁଣ ଲକ୍ଷ୍ମି ! ଏମିତି ରାଗ ନାହିଁ । ଦୟାକରି ମୋ' କଥା ଟିକିଏ ବୁଝିବାକୁ ଚେଷ୍ଟା କର । ତମେ ଯଦି ଅବୁଝା ହେବ, କିଏ ତାହା ହେଲେ ବୁଝିବ ମୋ' ମନର ଭାଷା ! ମୁଁ ଯେମିତି ଜଗତର ନାଥ, ତୁମେ ସେମିତି ଜଗଜ୍ଜନନୀ-ମାଆ ଲକ୍ଷ୍ମୀ । ସେଇଥିପାଇଁ ତ ତମେ ଜଗନ୍ମାତା-ମହାଲକ୍ଷ୍ମି ! ସାରା ଜଗତ ଆମର ସନ୍ତାନ । ସନ୍ତାନ ପାଖରେ ଜାତି-ଧର୍ମ-ବର୍ଣ୍ଣର ବାଛ-ବିଚାର ନଥାଏ । କିନ୍ତୁ ସମସ୍ତେ ଦେଉଳ ଭିତରକୁ ଆସି ଆମକୁ ଦର୍ଶନ କରିପାରନ୍ତି ନାହିଁ । ଅଥଚ ଦର୍ଶନ ପାଇଁ ସେମାନଙ୍କ ପ୍ରାଣରେ କି ଅଥଳ ଆକୁଳତା ! ବର୍ଷରେ ଅନ୍ତତଃ ଥରଟିଏ ସେମାନଙ୍କୁ ଦର୍ଶନ ନଦେଲେ, ପ୍ରାଣର ସେ ଅତୃପ୍ତି ଭାରି ବେଦନା ଦାୟକ ହୋଇଉଠିବ ଲକ୍ଷ୍ମୀ । ସେଇମାନଙ୍କ ପାଇଁ ତ ଆମର ଏ ରଥଯାତ୍ରା ।'

ଜଗନ୍ନାଥଙ୍କ କଥା ଶେଷ ହେଉ ନହେଉଣୁ ବେଶ୍ କଠିନ ସ୍ୱରରେ ଲକ୍ଷ୍ମୀ କହିଲେ - 'ଆମେ ଆମେ ବୋଲି ଯେ ବାରମ୍ବାର କହି ଲାଗିଛ, ଇଏ 'ଆମେ'ଟି କିଏ ସବୁ କହିଲ ! ତମେ କ'ଣ ଜାଣନା, ତମ ଦି' ଭାଇଙ୍କ ସହ ରଥଯାତ୍ରାରେ ଯିବା ମୋ' ପକ୍ଷରେ ସମ୍ଭବ ନୁହେଁ । ତା'ହେଲେ ଆମେ ବୋଲି ତୁମେ କାହାକୁ କହୁଛ ... ?'

ଥତମତ ହୋଇ ଜଗନ୍ନାଥ କହିଲେ - 'ମୁଁ ଆଉ ବଡ଼ଭାଇ ... ।' ସୁଭଦ୍ରା କଥା ଉଠାଇବା ପାଇଁ ତାଙ୍କର ସାହସ କୁଳାଇଲା ନାହିଁ । ସେ କିଛି କ୍ଷଣ ନିରବରେ କଟାଇ ହଠାତ୍ ଉଠି ପଡ଼ିଲେ ଓ ଲକ୍ଷ୍ମୀଙ୍କୁ ନିଜ ଆଡ଼କୁ ଆକର୍ଷିତ କରି ଆଣି, ଆଞ୍ଜୁଳାରେ ଲକ୍ଷ୍ମୀଙ୍କ ମୁହଁକୁ ସାମାନ୍ୟ ଉପରକୁ ଟୋକି ଧରି ମୁଗ୍ଧ ବିସ୍ମୟରେ ଚାହିଁ ରହିଲେ । କେଇମୁହୂର୍ତ୍ତ କଟିଗଲା ପରେ ଜଗନ୍ନାଥ ଦୃଷ୍ଟି ତଳକୁ କରି କହିଲେ - 'କେଇଟାବା ଦିନ ! ନବଦିନର ଯାତ୍ରା । ତମେ ଅଭିମାନ କର ନାହିଁ ଲକ୍ଷ୍ମୀ । ତୁମେ ଦୀର୍ଘ ନିଃଶ୍ୱାସଟିଏ ତ୍ୟାଗ କରିବା ବେଳକୁ ମୁଁ ଦେଉଳକୁ ବାହୁଡ଼ି ଆସିଥିବି ।' ଏତକ କହି ଜଗନ୍ନାଥ ଲକ୍ଷ୍ମୀଙ୍କ ହାତରେ ମୃଦୁ ଚାପ ଦେଇ ଖୁବ୍ ସନ୍ତର୍ପଣରେ ଲକ୍ଷ୍ମୀଙ୍କ ମନ୍ଦିରରୁ ବଡ଼ଦେଉଳକୁ ଫେରିଗଲେ । ତା'ପରେ ଦୁଃସହ ନିଃସଙ୍ଗତା ଭିତରେ ନିମଜ୍ଜିତ ହୋଇଯାଇଥିଲେ ଲକ୍ଷ୍ମୀ ।

ବଡ଼ଦେଉଳ ଉପର ଦେଇ ଉଡ଼ିଯାଉଥିବା ଗୋଟିଏ ଏକୁଟିଆ ନିଶୀଥ ପକ୍ଷୀର ସ୍ୱନରେ ଲକ୍ଷ୍ମୀଙ୍କର ତନ୍ମୟତା ଭାଙ୍ଗିଗଲା । କିନ୍ତୁ ଅଳ୍ପ ସମୟ ମଧ୍ୟରେ ସେ ପୁଣି ଅନ୍ୟମନସ୍କ ହୋଇ ପଡ଼ିଲେ ଓ ଫେରିଗଲେ ତାଙ୍କର ସେ ଭାବ-ଜଗତକୁ । ତାଙ୍କ ଆଖି ଆଗରେ ଭାସି ଉଠିଲା ସେଦିନ ରଥଯାତ୍ରାରେ ଘଟିଯାଇଥିବା ଘଟଣାର ଅଭାବିତ ଦୃଶ୍ୟସବୁ ।

ଜଗନ୍ନାଥ ସିନା କହି ଦେଇଗଲେ - 'ଆମେ'ମାନେ ସିଏ ଆଉ ବଡ଼ଭାଇ ବଳରାମ ହେଲେ ସେମାନେ କ'ଣ ସେ ମଉନମୁହାଁ ସୁଭଦ୍ରାଙ୍କୁ ଦେଉଳରେ ଏକାକିନୀ ଛାଡ଼ି ଚାଲିଯାଇପାରିବେ ! କେଡ଼େ ଗେହ୍ଲା ଭଉଣି ! ସରାଗରେ ପାଖରେ ବସେଇଛନ୍ତି । ଦଣ୍ଡେ ଛାଡ଼-ବାଡ଼ ନାହିଁ । ସେ ଭଉଣୀଟାବି କେମିତି କେଜାଣି ! ଏଡ଼େ ବଡ଼ ଝିଅଟା, ସବୁବେଳେ ଭାଇମାନଙ୍କ ମେଳରେ ... । ତାଙ୍କୁ ଟିକିଏ ସଂକୋଚ ବି ଲାଗୁ ନାହିଁ । ରଥଯାତ୍ରାରେ ସେ ଭାଇମାନଙ୍କ ସହ ଯାଇଛି ନା ନାହିଁ, ସେଇ ଗୁମର ଭେଦ କରିବା ପାଇଁ ଲକ୍ଷ୍ମୀ ତାଙ୍କର ଜଣେ ଅନୁଗତ ପରିଚାରୀକୁ ଗୋପନରେ ରଥ ପାଖରେ ମୁତୟନ କରିଥିଲେ । ଜଗନ୍ନାଥଙ୍କ ପହଣ୍ଡି ଶେଷ ହେବାର ଅଳ୍ପ ପୂର୍ବରୁ ସେଇ ଦାସୀ ପାଖରୁ ସମ୍ବାଦଟି ମିଳିଲା - ରଥଯାତ୍ରାରେ, ଭାଇ-ଭଉଣୀ ସମସ୍ତେ ଯାଉଛନ୍ତି । ଦେବୀଙ୍କର ରଥାରୋହଣ ଶେଷ ହୋଇଗଲାଣି । ସମ୍ବାଦଟି ଶୁଣିବା ମାତ୍ରେ ଲକ୍ଷ୍ମୀଙ୍କର ସମଗ୍ର ପ୍ରାଣ-ସତ୍ତା ହାହାକାର କରି ଉଠିଲା । ସେ ସ୍ତବ୍ଧ-ବିସ୍ମୟରେ ପଲଙ୍କ ଉପରେ ଲଥ୍ କରି ବସି ପଡ଼ିଲେ । ପ୍ରବଳ କ୍ରୋଧରେ ତାଙ୍କର ବାକ୍ଶକ୍ତି ରୁଦ୍ଧ ହୋଇଯାଉଥିଲା । ସେ ଇଙ୍ଗିତରେ ଦାସୀମାନଙ୍କୁ ବାହାରକୁ ଚାଲିଯିବା ପାଇଁ ନିର୍ଦ୍ଦେଶ ଦେଲେ । ମନ୍ଦିରର ଗର୍ଭଗୃହ ନିମିଷକ ମଧ୍ୟରେ ଶୂନ୍ୟ ହୋଇଗଲା । କିଛି ସମୟ ପାଇଁ ସେ ନିଜେ ମଧ୍ୟ ବୁଡ଼ିଗଲେ ଶୂନ୍ୟତାର ସେ ମହାସମୁଦ୍ର ମଧ୍ୟରେ । ତାଙ୍କ ଭିତରେ ଯେମିତି ଧୀରେ ଧୀରେ କେନ୍ଦ୍ରୀଭୂତ ହେଉଥିଲା ଦୂରନ୍ତ ଲଘୁଚାପ । କ'ଣ କରିବେ, ବୁଝିପାରୁନଥିଲେ ସେ ... । ହଠାତ୍ ତାଙ୍କ ମନକୁ ଆସିଲା, ଏ ପ୍ରସଙ୍ଗରେ ସରସ୍ୱତୀ ଓ ବିମଳାଙ୍କ ସାଙ୍ଗରେ ପରାମର୍ଶ କରିବା ଉଚିତ ହେବ । ସେଇକଥା ସ୍ଥିର କରି ଲକ୍ଷ୍ମୀ ଦାସୀ ହାତରେ ଉଭୟ ଦେବୀଙ୍କ ପାଖକୁ ଖବର ପଠାଇଲେ ଓ ପରେ ପରେ ନିଜେ ସରସ୍ୱତୀଙ୍କୁ ସାଙ୍ଗରେ ନେଇ ବିମଳାଙ୍କ ମନ୍ଦିରରେ ଉପସ୍ଥିତ ହେଲେ ।

ଦୁଇ ଦେବୀଙ୍କ ସମ୍ମୁଖରେ ମନକଥା ଖୋଲି କହିଦେବା ପରେ ଲକ୍ଷ୍ମୀ ଟିକିଏ ହାଲୁକା ଅନୁଭବ କରୁଥିଲେ । ସମୁଦ୍ର ଢେଉ ପରି ନିଜ ଭିତରେ ଉଠୁଥିବା କୋହକୁ କୌଣସି ମତେ ସମ୍ବରଣ କରି ଲକ୍ଷ୍ମୀ କହିଲେ - 'ଏମିତି କପଟୀ ଆଉ କିଏ ଅଛି କୁହ ... । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ବି ଏପରି କପଟାଚାର ।' ଏତକ କହିସାରି ଲକ୍ଷ୍ମୀ ନଣନ୍ଦ-ଦେଢ଼ଶୂରଙ୍କ ଉପରେ ଗାଳିବର୍ଷଣ ଆରମ୍ଭ କରିଦେଲେ । ସରସ୍ୱତୀ ତାଙ୍କୁ ସାନ୍ତ୍ୱନା ଦେବେ କ'ଣ, ଓଲଟି ନିଆଁରେ ଘିଅ ଢାଳିଲା ପରି କହିଲେ - 'କେଉଁ କାଳରେ ବା ଜଗନ୍ନାଥ କପଟିଆ ନଥିଲେ । ରାମ ଅବତାରରେ ସୀତାଙ୍କପ୍ରତି କି ଆଚରଣ କରିଥିଲେ, ସେ କଥା କ'ଣ ସଂସାର ଜାଣି ନାହିଁ ? ବଣକୁ ବୁଲିବା ପାଇଁ ପଠେଇଦେଇ ସୀତାଙ୍କୁ ଯେ ସେ ସାରା ଜୀବନ ପାଇଁ ତ୍ୟାଗ କରୁଛନ୍ତି, ଏହାର ଆଭାସ ବି ସେ ଦେଇନଥିଲେ ।' ସରସ୍ୱତୀଙ୍କ କଥା ଶେଷ ନ ହେଉଣୁ, ବିମଳା ଯେମିତି କଥାଟାକୁ ମାଡ଼ି ବସିଲେ - 'ଆଉ କୃଷ୍ଣାବତାର କଥା ଟିକିଏ ମନେ ପକେଇଲା ଭଉଣୀ । କିଶୋର ବୟସରେ, ଗୋପୀ-ଗୋପାଳଙ୍କ ସହିତ ଯାହା କପଟତା ତ କରିଥିଲେ, ହେଲେ ଭାରତ ଯୁଦ୍ଧରେ କ'ଣ ହେଲା ? ତାଙ୍କରି କପଟତା ପାଇଁ ତ ପାଣ୍ଡବମାନେ ଯୁଦ୍ଧରେ ଜିତିଲେ ।' ତିନି ଦେବୀଙ୍କ ମଧ୍ୟରେ ଘମାଘୋଟ ମନ୍ତ୍ରଣା ହେଲା ଓ ଶେଷରେ ସ୍ଥିର ହେଲା - ଏ କପଟତାର ଅବଶ୍ୟ ପ୍ରତିଶୋଧ ନିଆ ହେବ ।





ନିଜ ଦେଉଳକୁ ଫେରି ଆସି ଲକ୍ଷ୍ମୀ ତାଙ୍କର ସେବକମାନଙ୍କୁ ଡାକି ହାନ୍ଦୋଳା ସଜ କରିବାକୁ ଆଦେଶ ଦେଲେ ଓ କିଛି ସମୟ ପରେ କ୍ରୋଧ ଜର୍ଜରିତ ଚିତ୍ତରେ ନିଜର ଅନୁଗତ ଦାସୀମାନଙ୍କୁ ଧରି ରଥଯାତ୍ରାରେ ବିଘ୍ନ ସୃଷ୍ଟି କରିବା ପାଇଁ ବଡ଼ଦେଉଳରୁ ନିଷ୍କ୍ରାନ୍ତ ହୋଇଗଲେ ।

ଜଗନ୍ନାଥଙ୍କ ରଥ ସେତେବେଳକୁ ବଳଗଣ୍ଡି ନିକଟରେ ପହଁଚି ସାରିଥାଏ । ରଥଯାତ୍ରାର ସେ ଆନନ୍ଦ-ଉଲ୍ଲାସ ଲକ୍ଷ୍ମୀଙ୍କୁ ଯେମିତି ବିଷ ପରି ଲାଗୁଥାଏ । ସେ ନନ୍ଦିଘୋଷ ରଥଠାରୁ ଅଳ୍ପ ଦୂରରେ ଅଟକି ଯାଇ ତାଙ୍କ ଦାସୀମାନଙ୍କୁ ରଥ ଭାଙ୍ଗିବା ପାଇଁ ଆଦେଶ ଦେଲେ । ଲକ୍ଷ୍ମୀଙ୍କର ଆଦେଶ ପାଇବା ମାତ୍ରେ ଦାସୀମାନେ ବିପୁଳ ଉଦ୍ଦୀପନାରେ ରଥଯାତ୍ରାର ସେ ସମାରୋହ ମଧ୍ୟରେ ଗୋଳମାଳ ଆରମ୍ଭ କରିଦେଲେ । ଜଗନ୍ନାଥଙ୍କ ସେବକମାନେ ନାରୀର ପାର୍ବତୀ ରୂପଟି ଦେଖିଥିଲେ, ମାତ୍ର ଏପରି ଦୁର୍ଗା ରୂପ ଦେଖିନଥିଲେ । ସେଥିପାଇଁ ସେମାନେ ଭୟରେ ରଥଛାଡ଼ି ଯିଏ ଯୁଆଡ଼େ ପାରିଲେ ଧାଇଁଲେ । ମୁହୂର୍ତ୍ତକ ମଧ୍ୟରେ ସବୁକିଛି ନିଶ୍ଚଳ ହୋଇଗଲା । ଲକ୍ଷ୍ମୀ ଅନତି ଦୂରରେ ଯାତ୍ରାର ସେ ଶ୍ରୀହୀନ ରୂପ ଦେଖି ମନେ ମନେ ଆମୋଦିତ ହେଉଥିଲେ - ତାଙ୍କର କ୍ରୋଧ ଶାନ୍ତ ହୋଇ ଆସୁଥିଲା । ସେ ଜାଣନ୍ତି, ଜଗନ୍ନାଥ ତାଙ୍କ ପାଖକୁ ଆସିବେ ନାହିଁ - ଆସିପାରିବେ ମଧ୍ୟ ନାହିଁ । ତାଙ୍କର କପଟତା ତାଙ୍କର ସବୁ ସତ୍ ସାହସକୁ ବାମ୍ପ ପରି ଉଡ଼େଇ ନେଇଥିବ । ଭୟରେ ଜାକିଜୁକି ହୋଇ ନନ୍ଦିଘୋଷ ରଥ ଉପରେ ଅସହାୟ ଭାବରେ ବସିଥିବେ ଜଗନ୍ନାଥ । ସାହସ କୁଳାଉ ନଥିବ ତାଙ୍କୁ ଭେଟିବା ପାଇଁ । ଲକ୍ଷ୍ମୀଙ୍କର ଆମୋଦ ଦ୍ୱିଗୁଣିତ ହେଲା - ମେଘମୁକ୍ତ ଆକାଶ ପରି ମନଟା ନିର୍ମଳ ହୋଇଗଲା । ନା, ଆଉ କୌଣସି କ୍ଷୋଭ ନାହିଁ । ସେ ଦାସୀମାନଙ୍କୁ ଫେରି ଆସିବା ପାଇଁ ନିର୍ଦ୍ଦେଶ ଦେଇ ବଡ଼ଦେଉଳକୁ ବାହୁଡ଼ି ଆସିଲେ ।

କିନ୍ତୁ ସନ୍ଧ୍ୟାଠାରୁ ମନଟା ଖୁବ୍ ଉଦାସ ହୋଇଯାଇଥିଲା । ବାରମ୍ବାର ତାଙ୍କ ଆଖି ଆଗରେ ଝଲସି ଉଠିଥିଲା । ରଥଯାତ୍ରାର ସେ ଶ୍ରୀହୀନ ଦୃଶ୍ୟ । କେତେ ଲୋକ ! ସତେ ଅବା ଜନସମୁଦ୍ର । ଘଣ୍ଟ, ଘଣ୍ଟା, ଖୋଳ, କରତାଳ, ନାଚ-ଗୀତର ଘୋ-ଘୋ ଶବ୍ଦରେ ବଡ଼ଦାଣ୍ଡ ଫାଟି ପଡୁଥିଲା । ପରମ ଉତ୍ସାହରେ ଭକ୍ତମାନେ ରଥଟାଣି ଚାଲିଥିଲେ । ଆଉ ଏତକିବେଳେ ଦାସୀମାନଙ୍କର ଆକ୍ରମଣ, ଭୟରେ ସେବକମାନଙ୍କର ପଳାୟନ, ଆକସ୍ମିକ ନିସ୍ତବ୍ଧତା, ପୁଣି ତା'ରି ଭିତରେ ନନ୍ଦିଘୋଷ ରଥରେ ଚୁପ୍‌ଚାପ ଜାକିଜୁକି ହୋଇ ବସିଥିବା ଜଗନ୍ନାଥଙ୍କର ସହାୟ ରୂପ ତାଙ୍କ ଆଖିରେ ଆଗରେ ଭାସି ଉଠି ତାଙ୍କୁ ଅସ୍ଥିର-ଉଦ୍‌ବେଳ କରି ପକାଉଥିଲା । ଚିରକାଳ ସେ ଚଞ୍ଚଳା । କୌଣସି କଥାକୁ ଗୁରୁତ୍ୱ ଦେଇ ଭାବିବା ପରି ଧୈର୍ଯ୍ୟ ତାଙ୍କର ନଥାଏ । ଯାହା ମନକୁ ଆସିଲା, ସଙ୍ଗେସଙ୍ଗେ ତାହା କରି ବସନ୍ତି ଓ ପରେ ସେଥିପାଇଁ ଅଶେଷ କଷ୍ଟ ପାଆନ୍ତି ।

ଲକ୍ଷ୍ମୀଙ୍କର ବୁକୁ ଭେଦ କରି ଏକ ଉଷ୍ମ ଦୀର୍ଘଶ୍ୱାସ ବାହାରି ଆସିଲା । ସେ ହଠାତ୍ ସଚେତନ ହେଲେ । ଅନେକ ସମୟ ଧରି ସେ ମନ୍ଦିର ପାହାଚ ଉପରେ ବସି ଗତକଥା ସବୁ ଖୁବ୍ ତନ୍ମୟ ଚିତ୍ତରେ ଭାବି ଚାଲିଥିଲେ । ବାସ୍ତବ ଦୁନିଆଁ ସହିତ ତାଙ୍କର ଯେମିତି କୌଣସି ସମ୍ବନ୍ଧ ନଥିଲା ! ଏହା ଭିତରେ ଆକାଶର ନିବିଡ଼ତାକୁ ଢାଙ୍କି ଆଷାଢ଼ର କଳାମେଘ ବେଶ୍ ଗାଢ଼ ହୋଇଯାଇଥିଲା ଓ ଟୋପା-ଟୋପା ବର୍ଷା ବି ପଡ଼ିବାକୁ ଆରମ୍ଭ କରିଥିଲା । ଲକ୍ଷ୍ମୀ ଉଠି ପଡ଼ି ପୁଣି ଥରେ ଚାରିଆଡ଼େ ଆଖି ବୁଲେଇ ଆଣି ଦେଉଳ ଭିତରକୁ ଫେରିଗଲେ ।

(ଦୁଇ)

ବଳଗଣ୍ଡିଠାରେ ଅଟକି ରହିଥିବା ନନ୍ଦିଘୋଷ ରଥରେ ନିରବରେ ବସି ଶୂନ୍ୟ ଦୃଷ୍ଟିରେ ମେଘାଚ୍ଛନ୍ନ ଆକାଶ ଆଡ଼କୁ ଚାହିଁ ରହିଥିଲେ ଜଗନ୍ନାଥ । ଟପ୍-ଟପ୍ ବର୍ଷାର ଶବ୍ଦ ବ୍ୟତୀତ ଅନ୍ୟକୌଣସି ଶବ୍ଦ ନଥିଲା । ରାତି ଯେତିକି ନିବିଡ଼ ହେଉଥିଲା, ଜଗନ୍ନାଥଙ୍କ ନିଃସଙ୍ଗତା ସେତିକି ଗଭୀର ହେଉଥିଲା ।

ତାଳଧ୍ୱଜ ଓ ଦେବଦଳନ ରଥ ସୂର୍ଯ୍ୟାସ୍ତ ପୂର୍ବରୁ ଗୁଣ୍ଡିଚା ମନ୍ଦିର ସମ୍ମୁଖରେ ଲାଗି ସାରିଥିଲା । କିନ୍ତୁ ନନ୍ଦିଘୋଷ ରଥ ଅଟକି ଯାଇଥିଲା ବଳଗଣ୍ଡି ନିକଟରେ । ଲକ୍ଷ୍ମୀଙ୍କ ଦାସୀ ବାହିନୀଙ୍କର ଲକ୍ଷ୍ୟଥିଲା ନନ୍ଦିଘୋଷ ରଥ ଆକ୍ରମଣ । ସେମାନଙ୍କର ଉଗ୍ରରୂପ ଦେଖି ସେବକମାନେ ଛାନିଆରେ ଯିଏ ଯୁଆଡ଼େ ପଳାଇଗଲେ । କିଛି ସମୟ ପାଇଁ ବଳଗଣ୍ଡି ଯେମିତି ହୋଇଯାଇଥିଲା ଗୋଟାଏ ଭୟଙ୍କର ଯୁଦ୍ଧ କ୍ଷେତ୍ର । ପରିସ୍ଥିତି ସ୍ୱାଭାବିକ ହେବା ପାଇଁ ଯଥେଷ୍ଟ ବିଳମ୍ବ ହେଲା । ଭୟରେ ପଳାୟନ କରିଥିବା ସେବକ ତଥା ଅନ୍ୟମାନେ ଗୋଟି ଗୋଟି ହୋଇ ରଥ ପାଖରେ ଆସି ସମବେତ ହେଲେ । ପୁଣି ଗହଳ-ଚହଳ ଆରମ୍ଭ ହୋଇଗଲା । କିନ୍ତୁ ରଥଟଣା ହୋଇପାରିଲା ନାହିଁ । କାରଣ ସେତେବେଳକୁ ସୂର୍ଯ୍ୟାସ୍ତ ହୋଇ ଆସୁଥିଲା । ପରମ୍ପରା ଅନୁସାରେ ସୂର୍ଯ୍ୟାସ୍ତ ପରେ ରଥଟଣା ହେବା ବିଧି ନୁହେଁ । ସେଥିପାଇଁ ନନ୍ଦିଘୋଷ ରଥରେ ଜଗନ୍ନାଥ ବଳଗଣ୍ଡିଠାରେ ଅଟକି ଯାଇଥିଲା ।

ଜଗନ୍ନାଥ ଆକାଶ ଆଡୁ ଦୃଷ୍ଟି ଫେରାଇ ଆଣି ସାମ୍ନାକୁ ଚାହିଁଲେ । ସେଇ ତରଳ ଅନ୍ଧକାର ଭିତରେ ବି, ଗୁଣ୍ଡିଚା ମନ୍ଦିର ଆଗରେ ଠିଆ ହୋଇଥିବା ତାଳଧ୍ୱଜ ଓ ଦେବଦଳନ ରଥକୁ ସେ ଦେଖିପାରୁଥିଲେ । ରଥ ଉପରେ ବଡ଼ଭାଇ ଓ ସୁଭଦ୍ରା ପରମ ନିଶ୍ଚିନ୍ତରେ ଶୋଇଯାଇଥିଲେ । ସେ କିନ୍ତୁ କଟାଇ ଚାଲିଛନ୍ତି ବିନିଦ୍ର ରଜନୀ । ମନେ ମନେ ବଳରାମଙ୍କ ଉପରେ ସେ ରୁଷ୍ଟ ହୋଇ ଉଠୁଥିଲେ । ଏସବୁ ଘଟଣା ପାଇଁ ସିଏ ହିଁ ତ ଦାୟି ! ମଝିରେ ମଝିରେ ତାଙ୍କର କ'ଣ ହୁଏ କେଜାଣି, ଅକାରଣରେ ସେ ଲକ୍ଷ୍ମୀଙ୍କ ଉପରେ ରୁଷ୍ଟ ହୋଇଯାଆନ୍ତି ଆଉ ଏମିତି କାଣ୍ଡ କରି ବସନ୍ତି ଯେ ତାର ଫଳ ତାଙ୍କୁ ହିଁ ବେଶୀ ଭୋଗିବାକୁ ପଡ଼େ । ସେଥର ସେମିତି ସକାଳୁ ସକାଳୁ ଶ୍ରୀୟା ଚଣ୍ଡାଳୁଣୀ ଘରେ ଲକ୍ଷ୍ମୀଙ୍କୁ ଦେଖି ଦେଉଳରେ ଆସି ଏମିତି ତୁମ୍ଭି ତୋଫାନ ଆରମ୍ଭ କରି ଦେଲେ ଯେ, ଶେଷରେ ଲକ୍ଷ୍ମୀଙ୍କୁ ଦେଉଳରୁ ତଡ଼ିବା ଯାଏଁ





କଥା ଗଲା । ଆଉ ଲକ୍ଷ୍ମୀଙ୍କୁ ଦେଉଳରୁ ତଡ଼ିଦେଲା ପରେ, ଦି' ଭାଇ କେମିତି ଲକ୍ଷ୍ମୀଛଡ଼ା ହୋଇ ବାବନାଭୂତ ପରି ଘୂରି ବୁଲିଥିଲେ, ସେ କଥା ଭାଇ ହୁଏତ ଭୁଲି ଯାଇପାରିଥା'ନ୍ତି । କିନ୍ତୁ ସେ ଭୁଲି ନାହାନ୍ତି । ଭୁଲିବା ସମ୍ଭବ ମଧ୍ୟ ନୁହେଁ । ସେ ସବୁ ଦିନର ସକରୁଣ ସ୍ମୃତି ଆଜିବି ମନେ ପଡ଼ିଲେ, ଆତଙ୍କରେ ତାଙ୍କ ଦେହ ଶୀତେଇ ଉଠେ ।

ଏଥର ବି ସେମିତି ହେଲା । ରଥଯାତ୍ରାର ଦିନ କେଇଟା ପୂର୍ବରୁ, ଦିନେ ବଳରାମ ତାଙ୍କୁ କହିଲେ - 'ରଥଯାତ୍ରା ତ ଆଉ ବେଶୀ ଦିନ ନାହିଁ । ତୋ'ର ସବୁ ପ୍ରସ୍ତୁତି ସରିଗଲାଣି ତ ଜଗା !' ପ୍ରସ୍ତୁତିର ଅର୍ଥ ଜଗନ୍ନାଥ ବୁଝିପାରିଲେ । ସେ କିଛି ନକହି, ମୁଣ୍ଡ ତଳକୁ କରି ସେଇମିତି ନିରବରେ ବସିଥିବା ଦେଖି ବଳରାମ କିଞ୍ଚିତ ରୁଷ୍ଟ ସ୍ୱରରେ କହିଲେ - 'କିରେ, ଏମିତି ଘୁଙ୍ଗାଙ୍କ ପରି କ'ଣ ଚୁପ୍‌ଚାପ ବସିଛୁ - କିଛି କହୁନାହୁଁ ଯେ... ।' କ'ଣ ଭାବୁଛୁକି - ସାଙ୍ଗରେ ଲକ୍ଷ୍ମୀକୁ ନେବା ପାଇଁ !' ଜଗନ୍ନାଥ ଚମକି ପଡ଼ି, ମୁହଁ ଉଠାଇ ଭାଇଙ୍କ ଆଡ଼କୁ ବୋକାଙ୍କ ପରି ଚାହିଁ ରହିଲେ । ତାଙ୍କ ପାଦଠାରୁ ମସ୍ତକଯାଏ ଯେମିତି ଥଣ୍ଡା ହୋଇଗଲା । ଭାଇ ତାଙ୍କ ଭିତରଟାକୁ ପଢ଼ି ଦେଲେ ନା କ'ଣ ! କିନ୍ତୁ ତାଙ୍କୁ ବେଶୀ ଭାବିବାକୁ ଅବକାଶ ନ ଦେଇ, ବଳରାମ କହିଲେ - ସେ ଲକ୍ଷ୍ମୀଙ୍କୁ ସାଙ୍ଗରେ ନେବା ଚଳିବ ନାହିଁ । ତା'ର ଯେମିତି ଚଞ୍ଚଳମତି, କେତେବେଳେ କ'ଣ କରି ବସିବ, କିଏ ଜାଣେ ! ରଥଯାତ୍ରା ପାଇଁ ଆମେ ବାହାରକୁ ଯିବା କଥା ତାକୁ କହିଲୁଣି ନା ନାହିଁ । ଯଦି ନକହି ଥାଉ, ଜଲ୍‌ଦି ଯାଇ ତାକୁ କହ । କ'ଣ ମନେ ରହିଲା ନା ନାହିଁ ?'

ଜଗନ୍ନାଥ ମନେ ମନେ ଘୋର ବିରକ୍ତ ହୋଇ ଉଠୁଥିଲେ । ପାଟି ଖଲ ଖଲ ହେଉଥିଲା କହିଦେବା ପାଇଁ - 'ମନେ ରହିବ ନାହିଁ କାହିଁକି ! ଦିବାଲୋକ ପରି ସବୁ ସ୍ୱଷ୍ଟ ଭାବରେ ମନେଅଛି । ହେଲେ ତୁମେ କ'ଣ ବୁଝିପାରୁ ନାହିଁ ଯେ, ଜଣେ ସ୍ୱାମୀ ପକ୍ଷରେ ଏହାଠାରୁ ବଳି କଠିନ କାର୍ଯ୍ୟ ଆଉ କିଛି ନାହିଁ ।' ଭାଇ-ଭଉଣୀ ସମସ୍ତେ ମଉଜ କରିବା ପାଇଁ ରଥଯାତ୍ରାରେ ବାହାରକୁ ଯିବେ ଆଉ ଏକା ଏକା ଲକ୍ଷ୍ମୀ ପଡ଼ି ରହିବେ ଦେଉଳ ଭିତରେ ଏକଥା ଭାବିବା ବେଳକୁ ସୁଦ୍ଧା ଜଗନ୍ନାଥଙ୍କ ଛାତି ଏକ ଶ୍ୱାସରୋଧୀ ଯନ୍ତ୍ରଣାରେ କୋରି ହୋଇ ଯାଇଥିଲା । କିନ୍ତୁ ଭାଇଙ୍କୁ ସେ ସବୁ କଥା କହିହେବ ନାହିଁ । କହିଲେ, ମିଳିବ ଗୁଡ଼ାଏ ଗାଳି ଆଉ ଶେଷରେ 'ମାଇଚିଆଟା' ବୋଲି ଆକ୍ଷେପ । 'ହଉ କହିବି' - ଏତିକିମାତ୍ର କହି ପୁଣି ମୁହଁ ତଳକୁ କରି ଦେଇଥିଲେ ଜଗନ୍ନାଥ ।

ଭାଇଙ୍କ କ୍ରମାଗତ ତାଡ଼ନା ଯୋଗୁଁ ହିଁ ନେତ୍ରୋତ୍ସବ ଦିନ ସମୟ କରି ସେ ଲକ୍ଷ୍ମୀଙ୍କ ପାଖକୁ ଯାଇଥିଲେ ଓ ରଥଯାତ୍ରାରେ ଗୁଣ୍ଡିଚା ମନ୍ଦିର ଯାଉଥିବା ପ୍ରସଙ୍ଗ ଉଠେଇଥିଲେ । ଲକ୍ଷ୍ମୀ ମଧ୍ୟ କିଛି କମ୍ ନୁହନ୍ତି । ରଥଯାତ୍ରା କଥାଶୁଣି ସେ ଏମିତି ଗମ୍ଭୀର ହୋଇଗଲେ ଯେ, ଜଗନ୍ନାଥଙ୍କର ମନେ ହେଲା ନିରବତା ବି ତୀର ପରି ତୀକ୍ଷ୍ଣ ହୋଇପାରେ । ଜଗନ୍ନାଥ ଲକ୍ଷ୍ମୀଙ୍କୁ ଭାଇଙ୍କର ସବୁ କଥା କହିଲେ । କିନ୍ତୁ ଏ କଥା କହିବାକୁ ସେ ଆଦୌ ଭରସି ପାରିଲେ ନାହିଁ ଯେ, ସିଏ ଉଦଣ୍ଡୀ, ସେଥିପାଇଁ ଭାଇ ତାଙ୍କୁ ସାଙ୍ଗରେ ନେବାକୁ ଚାହାନ୍ତି ନାହିଁ । ଆଉ ଗୋଟାଏ କଥା ହେଲା, ସାଙ୍ଗରେ ତାଙ୍କର ଗେହ୍ଲା ଭଉଣୀ ସୁଭଦ୍ରା ବି ଯାଉଛି । ଜଗନ୍ନାଥ ଜାଣନ୍ତି, ଏ କଥା ତାଙ୍କ ମୁହଁରୁ ଶୁଣିଲେ, ବୋମା ଫୁଟିବା ପରି ଫାଟି ପଡ଼ିବେ ଲକ୍ଷ୍ମୀ । ଗଭୀର ନିଶୀଥର ସେ ମଦିର ମୁହୂର୍ତ୍ତମାନଙ୍କୁ କାହିଁକି ବା ସେ ବାରୁଦ ଧୂଆଁରେ ବାଷ୍ପାଚ୍ଛନ୍ନ କରିଥାଆନ୍ତେ । ଆଗ ରଥଯାତ୍ରାଟା ଭଲରେ-ଭଲରେ ସରୁ । ମାନଭଞ୍ଜନ ପାଇଁ କେତେ ସମୟ ଲାଗିବ । ତା'ପରେ ସେ ଲକ୍ଷ୍ମୀଙ୍କୁ ବୋଧ-ଶୋଧ କରି ବଡ଼ଦେଉଳକୁ ଫେରି ଆସିଥିଲେ ।

କିନ୍ତୁ ମାନଭଞ୍ଜନ ଯାଏଁ କଥା ଗଲା ନାହିଁ । ସୁଭଦ୍ରାକୁ ସାଙ୍ଗରେ ନେଇ ଆସୁଥିବାରୁ, ଲକ୍ଷ୍ମୀ ଯେ କୁପିତା ହେବେ, ସେ ନେଇ ଜଗନ୍ନାଥଙ୍କର କୌଣସି ସଂଶୟ ନଥିଲା । ମାତ୍ର ସେ କୋପ ଯେ ଏଡ଼େ ଭୟଙ୍କର ହୋଇପାରେ, ସେ କଥା ଜଗନ୍ନାଥ କଳ୍ପନା କରିପାରିନଥିଲେ । ସତରେ, ରଥଯାତ୍ରାରେ ଆଜି ଲକ୍ଷ୍ମୀ କି ଭୟଙ୍କର ଅବସ୍ଥା ସୃଷ୍ଟି ନକଲେ । ସେ ତ ତାଙ୍କ ଆଗକୁ ଯିବା ପାଇଁ ସୁଦ୍ଧା ଭରସି ପାରିଲେ ନାହିଁ । ବାଧ ହୋଇ ଯମେଶ୍ୱର, ନାଉକେଶ୍ୱର ଓ ମାରକଣ୍ଡେଶ୍ୱରଙ୍କୁ ଡକାଇ, ଲକ୍ଷ୍ମୀଙ୍କୁ ବୁଝାଶୁଝା କରିବା ପାଇଁ ଅନୁରୋଧ କଲେ ? ସେମାନେ ମଧ୍ୟ ନିରୂପାୟ ହୋଇ ଶେଷରେ ଦାସୀମାନଙ୍କୁ ଲାଞ୍ଚ ଦେଇ, ତାଙ୍କ ପାଖକୁ ଆଣିଲେ ଓ ମାତ୍ର ଦିନ କେତେଟା ପରେ ଯାତ୍ରା ଶେଷ କରି ଜଗନ୍ନାଥ ଦେଉଳକୁ ବାହୁଡ଼ି ଆସିବେ ବୋଲି ଲକ୍ଷ୍ମୀଙ୍କୁ ଆଶ୍ୱାସନା ଦେବାପରେ ଯାଇ ଅବସ୍ଥା ସମ୍ଭଳା ପଡ଼ିଲା ।

ଜଗନ୍ନାଥ, ଲକ୍ଷ୍ମୀଙ୍କର ଅଭିମାନକୁ ବଡ଼ ସରାଗରେ ଉପଭୋଗ କରନ୍ତି । ସେ ଜାଣନ୍ତି, ମାନଭଞ୍ଜନ କଳାରେ କେହି ତାଙ୍କୁ ଟପି ପାରିବେ ନାହିଁ । କୃଷ୍ଣାବତାରରେ ତ ତାଙ୍କର ସବୁଠାରୁ ପ୍ରିୟ କାର୍ଯ୍ୟ ଥିଲା ଶ୍ରୀରାଧାଙ୍କ ମାନଭଞ୍ଜନ । ଶ୍ରୀରାଧାଙ୍କର ମାନଭଞ୍ଜନ ପାଇଁ କ'ଣ ନ କରିଥିଲେ ସିଏ । ଏମିତିକି ଥରେ ତାଙ୍କୁ କହିବାକୁ ବି ପଡ଼ିଥିଲା - 'ଦେହି ପଦ ପଲ୍ଲବ ମୁଦାରଂ ।' ହେଲେ ଅଭିମାନ କଲେ ଶ୍ରୀରାଧା ଭାରି ସୁନ୍ଦର ଦେଖାଯାଆନ୍ତି । ଲକ୍ଷ୍ମୀ ବି ସେମିତି । ସେଥିପାଇଁ ତାଙ୍କ ଅଭିମାନରେ ସେ ମନେ ମନେ ଆମୋଦିତ ହୁଅନ୍ତି । କିନ୍ତୁ ରାଗିଗଲେ ଲକ୍ଷ୍ମୀଙ୍କର ଆଉ କିଛି ଜ୍ଞାନ ରହେ ନାହିଁ । ଜଗନ୍ନାଥ, ଲକ୍ଷ୍ମୀଙ୍କର ସେ ରୂପକୁ ସହି ପାରନ୍ତି ନାହିଁ । ସେ ରୂପକୁ ତାଙ୍କର ଭାରି ଡର । ଲକ୍ଷ୍ମୀଙ୍କର ସେପରି ରୂପ ଦେଖିଲେ ଅଜାଣତରେ ତାଙ୍କର ହାତ, ତାଙ୍କ ବର୍ତ୍ତୁଳ ଉଦର ଉପରେ ବୁଲି ଆସେ । ମନେପଡ଼େ ସେ 'ଲକ୍ଷ୍ମୀଛଡ଼ା' ଦିନମାନଙ୍କର ଅସହ୍ୟ ସ୍ମୃତି ।

ବିନିଦ୍ର ରଜନୀର ସେଇ ନିସ୍ତବ୍ଧ ମୁହୂର୍ତ୍ତରେ, ନନ୍ଦିଘୋଷ ରଥରେ ବସି ଜଗନ୍ନାଥ ଭାବୁଥିଲେ, ସାରାଦିନ ଘଟିଯାଇଥିବା ସେଇ ସବୁ ଦୁଃଖଦ ଘଟଣାମାନଙ୍କୁ । ଆଗପଛ ହୋଇ ଭାଇଭଉଣୀ କେତେ ମଉଜରେ ରଥରେ ବସି ଆଗେଇ ଯାଇଥାଆନ୍ତି । ସୁଭଦ୍ରା ସେ ଜନସମୁଦ୍ରକୁ ଦେଖି କୁରୁଳି ଉଠୁଥାଏ । ସେମାନେ ବେଶ୍ ଖୁସିରେ ଦେଖୁଥାଆନ୍ତି ବାହାର





ଦୁନିଆକୁ । ସେଠି ଆନନ୍ଦ ଆଉ ଉତ୍ସବର ଜୁଆର । ଦେଉଳ ଭିତର ପରି ବାହାରେ ଉତ୍ସବର ଏପରି ସମାରୋହ, ଭାଇଭଉଣୀଙ୍କୁ ଭାରି ପ୍ରୀତିକର ମନେ ହୋଇଥିଲା । ମାତ୍ର ଲକ୍ଷ୍ମୀଙ୍କ ନିର୍ଦ୍ଦେଶରେ ତାଙ୍କ ଦାସୀମାନେ ମୁହୂର୍ତ୍ତକ ମଧ୍ୟରେ ସବୁକିଛି ଲଣ୍ଡ-ଭଣ୍ଡ କରିଦେଲେ । ମୁହୂର୍ତ୍ତକ ମଧ୍ୟରେ ବଳଗଣ୍ଡି ହୋଇଗଲା ଯେମିତି ଏକ ବିଧ୍ୱସ୍ତ ରଣକ୍ଷେତ୍ର ।

ଭାଇଭଉଣୀ ଗୁଣ୍ଡିଚା ମନ୍ଦିର ସାମ୍ନାରେ ଯେଝାଯେଝା ରଥରେ ମହାଆନନ୍ଦରେ ଶୋଇଛନ୍ତି । କିନ୍ତୁ ତାଙ୍କ ଆଖିରେ ନିଦ ନାହିଁ । ସେ ଏକାଏକା । ଯେମିତି ଏକ ନିଃସଙ୍ଗ ନୀଳନଦୀ ... । ଅନନ୍ତକାଳ ଯାଏଁ ସେଇମିତି ବହି ଚାଲିଥିବେ । ଜଗନ୍ନାଥଙ୍କ ପ୍ରାଣର ଆଭ୍ୟନ୍ତରରୁ ବାହାରି ଆସିଲା ଦୀର୍ଘ ନିଃଶ୍ୱାସଟିଏ । ଭାବିବାରେ ବା କି ଲାଭ ! ଜଗତଟାତ ଏଇଆ । ଭାରି ନିଃସଙ୍ଗ, ଏକା-ଏକା ।

(ତିନି)

ମହାସମାରୋହରେ ବାହୁଡ଼ାଯାତ୍ରା ସଂପନ୍ନ ହେଲା । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଗୁଣ୍ଡିଚା ମନ୍ଦିରରୁ ବାହୁଡ଼ି ଆସି, ଦେଉଳକୁ ଫେରିବା ପାଇଁ ଉପଯୁକ୍ତ ସମୟ ପ୍ରତୀକ୍ଷାରେ ସିଂହଦ୍ୱାର ନିକଟରେ ରଥ ଉପରେ ଅପେକ୍ଷା କରି ବସି ରହିଲେ । ସେଠାରେ ମଧ୍ୟ ବାହୁଡ଼ା ପରବର୍ତ୍ତୀ ପାରମ୍ପରିକ ବିଧିବିଧାନ ସବୁ ସଂପନ୍ନ ହେଉଥାଏ । ରଥ ଉପରେ ଭାଇଭଉଣୀଙ୍କର ସୁନାବେଶ, ଅଧରପଣା ଇତ୍ୟାଦି ଅନୁଷ୍ଠାନ ମଧ୍ୟ ଯଥାରୀତି ସମାପ୍ତ ହେଲା । କେବଳ ଫେରିବା ମୁହୂର୍ତ୍ତକୁ ପ୍ରତୀକ୍ଷା... ।

ଦେଉଳରେ ବସି ଲକ୍ଷ୍ମୀ ତାଙ୍କର ଜଣେ ଅନୁଗତ ଦାସୀ ମାର୍ଫତ ସେଇସବୁ ଅନୁଷ୍ଠାନ କଥା ଶୁଣୁଥାଆନ୍ତି । ମୁହୂର୍ତ୍ତେ - ମୁହୂର୍ତ୍ତେ ତାଙ୍କ ଚିନ୍ତା ରାଜ୍ୟରେ ନାନା ଭାବନା ଖେଳି ଯାଉଥାଏ । ବାହୁଡ଼ା ଯାତ୍ରାରେ ଶ୍ରୀନଅର ସାମ୍ନାରେ ଜଗନ୍ନାଥଙ୍କୁ ସେ ବେଶ୍ ମିଠା-କଡ଼ା କଥା ଶୁଣାଇ ଆସିଥିଲେ । ହେରା ପଞ୍ଚମୀ ଦିନ ତ ତାଙ୍କ ରାଗ ପଞ୍ଚମକୁ ଉଠି ଯାଇଥିଲା । ସେ କୌଣସି କଥାଚିନ୍ତା ନକରି, ସିଧା ଗୁଣ୍ଡିଚା ମନ୍ଦିରକୁ ଯାଇ ଜଗନ୍ନାଥଙ୍କ ସହ ମନ ଭରି କଳି କରି ଆସିବା ପାଇଁ ରୁଦ୍ଧ ଶ୍ୱାସରେ ଛୁଟି ଯାଇଥିଲେ । କିନ୍ତୁ ତାଙ୍କୁ ଦେଖି ଗୁଣ୍ଡିଚା ମନ୍ଦିରରେ ବି ଆତଙ୍କ ଖେଳି ଯାଇଥିଲା । ସେବକମାନେ ଭୟରେ ମନ୍ଦିର ଦୁଆରେ ଟେରା ପକାଇ ଦେଇ ଯିଏ ଯୁଆଡ଼େ ଛୁ । ଦେଢ଼ଶୁର-ନଣନ୍ଦଙ୍କ ଆଗରେ ସେ ଆଉ କ'ଣ ବା କରିପାରିଥାଆନ୍ତେ । ରାଗରେ କୁହୁଳି-କୁହୁଳି ଫେରିବା ବେଳେ ନନ୍ଦିଘୋଷ ରଥରୁ କାଠଖଣ୍ଡିଏ ଭାଙ୍ଗି ଦେଇ, ଚୁପ୍‌ଚାପ୍, ଗୋପନରେ ହେରାଗୋହିରୀ ସାହି ବାଟ ଦେଇ ବଡ଼ଦେଉଳକୁ ଫେରି ଆସିଥିଲେ । ଶ୍ରୀନହର ସାମ୍ନାରେ ସେ ଭୟ ନଥିଲା । ଜଗନ୍ନାଥ ନନ୍ଦିଘୋଷରେ ଏକୁଟିଆ । ବଳରାମ-ସୁଭଦ୍ରା ନିଜ ନିଜ ରଥରେ ବସିଛନ୍ତି । ଏପରି ସୁବର୍ଣ୍ଣ ସୁଯୋଗକୁ ଲକ୍ଷ୍ମୀ ହାତଛଡ଼ା କଲେ ନାହିଁ । ବେଶ୍ ମନ ଭଳି ଜଗନ୍ନାଥଙ୍କ ଉପରେ ସେ ଅଭିମାନର ବର୍ଷା ଢାଳି ଦେଇଥିଲେ । ବର୍ଷାର ସେ ଗର୍ଜନ ମଧ୍ୟରେ ଜଗନ୍ନାଥଙ୍କ

ଉପରେ ସେ ଅଭିମାନର ବର୍ଷା ଢାଳି ଦେଇଥିଲେ । ବର୍ଷାର ସେ ଗର୍ଜନ ମଧ୍ୟରେ ଜଗନ୍ନାଥଙ୍କ ସ୍ୱର ସଂପୂର୍ଣ୍ଣ ଭାବରେ ହଜି ଯାଇଥିଲା । ମନେ ମନେ ଉଲ୍ଲସିତ ହୋଇଥିଲେ ଲକ୍ଷ୍ମୀ ।

ବାହୁଡ଼ା ଯାତ୍ରା ଶେଷରେ, ବହୁ ପ୍ରତୀକ୍ଷିତ ସେହି ଦିନ ଆସିଲା । ଭାଇ-ଭଉଣୀ ବଡ଼ ଦେଉଳକୁ ଫେରିବେ । ସେଥିପାଇଁ ସାଜସଜା ରବ ପଡ଼ିଗଲା । ଲକ୍ଷ୍ମୀ ଦାସୀ ପରିବୃତ୍ତା ହୋଇ 'ଚାହାଣି ମଣ୍ଡପ'ରେ ବସି ଦେଖୁଥାଆନ୍ତି ସିଂହଦ୍ୱାର ନିକଟରେ ଅଟକିଥିବା ଭାଇଭଉଣୀଙ୍କ ପହଣ୍ଡି ପାଇଁ ବିପୁଳ ଆୟୋଜନ । ସିଂହଦ୍ୱାର ଯେମିତି ଶବ୍ଦର ସମୁଦ୍ର ! ଲକ୍ଷ୍ମୀଙ୍କୁ ଭାରି କୌତୁକ ଲାଗୁଥାଏ । ଜଣେ ବୟସ୍କା ଦାସୀ କାନରେ ସେ ଚୁପ୍‌ଚାପ୍ କ'ଣ କହିଲେ କେଜାଣି, ସେ ଧୀର ପଦକ୍ଷେପରେ ସେଠାରୁ ନିଷ୍କ୍ରାନ୍ତ ହୋଇଗଲା । ସେଇ ଶବ୍ଦର ସମୁଦ୍ରରେ ଭାଇ-ଭଉଣୀ ଆସି ସିଂହଦ୍ୱାରରେ ପହଞ୍ଚିବା ମାତ୍ରେ, ହଠାତ୍ ସିଂହଦ୍ୱାରର କବାଟ ପଡ଼ିଗଲା । ତିନିଜଣ ହଠାତ୍ ଏପରି ଆକସ୍ମିକତାରେ ବିମୂଢ଼ ଭାବରେ ପରସ୍ପରକୁ ଚାହିଁ ଠିଆ ହୋଇଥାଆନ୍ତି । କାହାରି ମୁହଁରେ ଭାଷା ନାହିଁ । ଚାହାଣି ମଣ୍ଡପରେ ବସି ଲକ୍ଷ୍ମୀ ଆଶା କରିଥିଲେ, ଭାଇଭଉଣୀ ତାଙ୍କ ଦାସୀମାନଙ୍କୁ ଦୁଆର ଫିଟାଇବା ପାଇଁ ଅନୁନୟ-ବିନୟ-କରିବେ ।

ରଥଯାତ୍ରାରେ ଲକ୍ଷ୍ମୀଙ୍କୁ ସାଙ୍ଗରେ ନେଇ ନଥିବାରୁ ହୁଏତ ଲକ୍ଷ୍ମୀଙ୍କ ପାଖରେ କ୍ଷମା ଭିକ୍ଷା ବି କରିପାରନ୍ତି । ଏମିତି କେତେ ସବୁ କଥା ମନେ ମନେ ଭାବି ଚାଲିଥିଲେ ଲକ୍ଷ୍ମୀ । ଅଥଚ ସେପରି କିଛି ଘଟିଲା ନାହିଁ । ଭାଇଭଉଣୀ ତିନିହେଁ ଠିଆ ହୋଇଥିଲେ ମହମର ପ୍ରତିମାଟି ପରି । ଆଉ ସେ ହଳଦୀମୁହିଁ ସୁଭଦ୍ରାଙ୍କୁ ଦେଖ । ଓଃ, ଗେହ୍ଲା ଭଉଣୀକୁ ସାଙ୍ଗରେ ନେଇ ଭାଇମାନେ ରଥଯାତ୍ରାରେ ଯାଇଥିଲେ ବୋଲି କେତେ ଗର୍ବ । ଭାଇମାନଙ୍କ ମେଳରେ ଅଛନ୍ତି, ଆଉ କାହାକୁ ପରୁଆ ? ଠିଆ ହୋଇଛନ୍ତି - ଯେମିତି କିଛି ଜାଣନ୍ତି ନାହିଁ - ଅଥଚ ସବୁ ନାଟର ଗୋବର୍ଦ୍ଧନ । ଦିନ-ରାତି ଭାଇମାନଙ୍କ କାନରେ ମନ୍ତ୍ର ଫୁଙ୍କା - ରଥଯାତ୍ରାରେ ସେ କଳିହୁଡ଼ୀ ଲକ୍ଷ୍ମୀଙ୍କୁ ସାଙ୍ଗରେ ନେବା ନାହିଁ । ଘରର ବୋହୂଟା - ସିଏ କ'ଣ ଯାଇ ଦାଣ୍ଡରେ ରଥରେ ବସି ସମସ୍ତଙ୍କ ଆଗରେ ଯାତ୍ରା କରିବେ । ଭାଇମାନଙ୍କର ତ ଗେହ୍ଲା ଭଉଣୀର ସବୁ କଥାକୁ ତଥାସ୍ତୁ । ଏ କଥାରେ ବି ସେଇଆ । ମହାଆନନ୍ଦରେ ଭାଇଭଉଣୀଙ୍କର ରଥଯାତ୍ରା ଅନୁଷ୍ଠିତ ହେଲା । ସେ କିନ୍ତୁ ପଡ଼ି ରହିଲେ ବଡ଼ଦେଉଳର ଚାରିକାନ୍ଥ ଭିତରେ । କ'ଣ ନାଁ ଘରର ବୋହୂ-ସିଏ କ'ଣ ରଥଯାତ୍ରାରେ ଯାଇ ଦାଣ୍ଡରେ ବୁଲିବ । ହୁଁ, ଘରର ବୋହୂ ! ବୋହୂ କ'ଣ ? ସେ ତ ଜଗଜ୍ଜନନୀ - ମହାଲକ୍ଷ୍ମୀ, ସମସ୍ତଙ୍କର ମାଆ । ମାଆ ଆଗରେ ଘର କ'ଣ - ବାହାର କ'ଣ । ସେ କଥା ନୁହେଁ । ଅସଲ କଥା ହେଉଛି, ସେ ଗଲେ ଭାଇଭଉଣୀଙ୍କ ମଉଜ ଜମିବ ନାହିଁ । ମୁହଁରେ ଯାହା କହିଲେ ବି ଲକ୍ଷ୍ମୀଙ୍କୁ ସମସ୍ତଙ୍କର ଡର । ସେଥିପାଇଁ ତାଙ୍କୁ ସାଙ୍ଗରେ ନେଲେ ନାହିଁ ।





ଲକ୍ଷ୍ମୀଙ୍କର କୌତୁକ କ୍ରୋଧରେ ପରିଣତ ହୋଇଗଲା । ସେ ମେଘକୁ ଖୁବ୍ ଜୋର୍‌ରେ ବର୍ଷିବା ପାଇଁ ଆଦେଶ ଦେଲେ । ସଙ୍ଗେ ସଙ୍ଗେ ପାଳିତ ହେଲା ସେ ଆଦେଶ । ଆକାଶ ଫଟେଇ ମୂଷଳ ଧାରାରେ ମେଘ ବର୍ଷିବାକୁ ଲାଗିଲା । ଭାଇଭଉଣୀ ବର୍ଷାରେ ଭିଜି ଭିଜି ସେଇମିତି ମୁଣ୍ଡପୋତି ଠିଆ ହୋଇଥାଆନ୍ତି । ଲକ୍ଷ୍ମୀଙ୍କର କରୁଣା ହେଲା । ଦେଢ଼ଶୁର ଓ ନଣନ୍ଦଙ୍କୁ ତୁରନ୍ତ ଦ୍ୱାର ଖୋଲିଦେବା ପାଇଁ ନିର୍ଦ୍ଦେଶ ଦେଲେ । ବଳରାମ ଓ ସୁଭଦ୍ରା ବର୍ଷା ମାଡ଼ରେ ଏମିତି କାତିରି ଯାଇଥିଲେ ଯେ, ଦ୍ୱାର ଖୋଲିଯିବା ମାତ୍ରେ, ଜଗନ୍ନାଥଙ୍କ କଥା ସଂପୂର୍ଣ୍ଣ ଭାବରେ ଭୁଲିଯାଇ ଆଗପଛ ହୋଇ ସିଂହଦ୍ୱାର ଗୁମଟ ଭିତରକୁ ପଶିଗଲେ । ସିଂହଦ୍ୱାରରେ ପୁଣି କବାଟ ପଡ଼ିଗଲା । ଜଗନ୍ନାଥ ଭିତରକୁ ଯିବା ପାଇଁ ଖୁବ୍ ସନ୍ତର୍ପଣରେ ପାଦ ଉଠାଉଥିଲେ, ମାତ୍ର ପୁଣି ହଠାତ୍ ସିଂହଦ୍ୱାରର କବାଟ ପଡ଼ିଯିବା ଦେଖି, ସେ ଥମକି ଗଲେ । ବିମୂଢ଼ଙ୍କ ପରି ଚାରିଆଡ଼େ ଆଖି ବୁଲାଇ ଆଣୁ ଆଣୁ, ଚାହାଣି ମଣ୍ଡପ ପାଖରେ ତାଙ୍କ ଦୃଷ୍ଟି ଅଟକି ଗଲା । ଲକ୍ଷ୍ମୀ ସେଠାରେ ଦାସୀ-ପରିଚାରୀଙ୍କ ମେଳରେ ବସିଛନ୍ତି । ଜଗନ୍ନାଥ ଏଥର ସବୁ କଥା ବୁଝିପାରିଲେ । ଥରେ ସେ ଲକ୍ଷ୍ମୀଙ୍କ କୋପ ଦେଖିଛନ୍ତି । ଭାଇ କେମିତି ସେ ଦିନ ସବୁକୁ ପାଶୋରି ଯାଆନ୍ତି କେଜାଣି । ରଥଯାତ୍ରାରେ ଲକ୍ଷ୍ମୀଙ୍କୁ ସାଙ୍ଗରେ ନେଇ ଯାଇଥିଲେ କ'ଣ ଏମିତି ଅଶୁଦ୍ଧ ହୋଇଯାଇଥାଆନ୍ତା ! ଦେଢ଼ଶୁର-ଭାଇବୋହୂ ତ ଏକାଠି ଗୋଟିଏ ରଥରେ ଯାଉନଥିଲେ । ହେଲେ ତାଙ୍କ ପ୍ରାଣର ଏ ଭାଷା ଲକ୍ଷ୍ମୀ ପଢ଼ି ପାରିଲେ ତ ! ଯାହାହେଉ ବହୁ ଅନୁନୟ ବିନୟ ପରେ ସିଂହଦ୍ୱାର ଫିଟିଲା । ଜଗନ୍ନାଥ, ଭାଇ, ଭଉଣୀଙ୍କ ସହ ଆସି ରତ୍ନସିଂହାସନରେ ବିଜେ କଲେ ।

ସେଇ ଯେ ସ୍ନାନ ପୂର୍ଣ୍ଣିମା ରାତିରେ ରତ୍ନସିଂହାସନରୁ ଓହ୍ଲାଇ ଥିଲେ ଜଗନ୍ନାଥ, ଆଉ ଉଠି ନାହାନ୍ତି । ସ୍ନାନବେଦୀରେ, ସୁନାକୂଅର ସୁବାସିତ ଜଳ ଦେହରେ ବାଜିବା ମାତ୍ରେ, ତାଙ୍କର ଦେହ-ମନ ପୁଲକିତ ହୋଇଉଠିଥିଲା । ତାଙ୍କ ନିର୍ଦ୍ଦେଶରେ ସେବକମାନେ ତାଙ୍କ ଉପରେ ପ୍ରଚୁର ପାଣି ଢାଳିଥିଲେ । ଜଗନ୍ନାଥ ବେଶ୍ ମଉଜରେ ଅବୋଧ ଶିଶୁଟିଏ ପରି ଆଖି ଟୁଲୁଟୁଲୁ କରି ବସି ସେ ଶୀତଳ ଜଳର ମଜା ନେଲେ ସିନା, କିନ୍ତୁ ପରେ ପରେ ପଡ଼ିଗଲେ ଜ୍ୱରରେ । ସେଇ ସ୍ନାନବେଦୀରୁ ସିଧାଆସି ଅଣସର ଘରେ ବିଶ୍ରାମ ଗ୍ରହଣ କଲେ । ତାଙ୍କର ସବୁ ଦୈନନ୍ଦିନ କାର୍ଯ୍ୟସୂଚୀ ବାତିଲ ହୋଇଗଲା । କେବଳ ପଥ୍ୟ ଓ ବିଶ୍ରାମ । ଦିନ ପନ୍ଦରଟାରେ ସେ ସଂପୂର୍ଣ୍ଣ ସୁସ୍ଥ ହୋଇ ନବଯୌବନର ଉନ୍ମାଦନାରେ ଉଠି ବସିଲେ । ନାନା ବିଧିବିଧାନ ଭିତର ଦେଇ ରଥ ଓ ବାହୁଡ଼ା ଯାତ୍ରା ଶେଷ ହେଲା । ବେଶ୍ କିଛିଦିନର ବିରତି ପରେ ସେ ପୁଣି ରତ୍ନସିଂହାସନରେ ଅଧୀରୂଢ଼ ହେଲେ ।

ବଡ଼ସିଂହାର ଧୂପ ବଢ଼ିବା ବେଳକୁ ଅନେକ ରାତି ହୋଇଯାଇଥିଲା । ତା'ପରେ ବି କେତେକ ବିଧି ସଂପାଦିତ ହେଲା । ଖଟଶେଯ ଲାଗି, ଆଳତି, ଗାୟେଣୀମାନଙ୍କର ଗୀତଗୋବିନ୍ଦ ଗାନ ଆଦି ବିଭିନ୍ନ ନୀତି ସଂପାଦିତ ହେଉଥାଏ । ଜଗନ୍ନାଥ ଏସବୁ ବିଧିବିଧାନ ଦେଖୁଥାଆନ୍ତି ସିନା, କିନ୍ତୁ ତାଙ୍କର ମନ ଯାଇ ଘୂରି ବୁଲୁଥାଏ ଲକ୍ଷ୍ମୀଙ୍କ ପାଖରେ । ଆସନ୍ନ-ମିଳନ କଥା ଭାବି ଭାବି ଶିହରିତ ହେଉଥାଆନ୍ତି ସେ । କେତେବେଳେ ପହଡ଼ ପଡ଼ିବ ଓ ସେ ଲକ୍ଷ୍ମୀଙ୍କ ମନ୍ଦିରକୁ ଯିବେ, ସେଇ ଭାବନାରେ ଭିତରେ ଭିତରେ ଭାରି ଅସ୍ଥିର ହୋଇପଡୁଥାଆନ୍ତି । ଭାବୁଥାଆନ୍ତି ଲକ୍ଷ୍ମୀଙ୍କର ମାନଭଞ୍ଜନ ପାଇଁ ତାଙ୍କୁ ବେଶୀ ସମୟ ଲାଗିବ ନାହିଁ । କିନ୍ତୁ ତାଙ୍କ କୋପ । ବାପ୍‌ରେ ବାପ ! ସେଇ ସବୁ କଥା ଚିନ୍ତା କରି ଜଗନ୍ନାଥ ଖୁବ୍ ସଂକୁଚିତ ହୋଇ ପଡୁଥାଆନ୍ତି ।

ଧୀରେ ଧୀରେ ସବୁ ନୀତି ବଢ଼ିଲା । ପାଳିଆ ପଢ଼ିହାରୀ ଜୟବିଜୟ ଦ୍ୱାର ଆଉଜାଇ ଆଣିବା ପରେ ଆଉ କେତୋଟି ବିଧି ସଂପନ୍ନ ହେଲା । ଯଥାରୀତି କଳାହାଟ ଦ୍ୱାର ବନ୍ଦ କରି ତାଲା ପକାଇ ସାରିବା ପରେ, ସେଇ ତାଲା ଉପରେ ମାଟିର, ମଦନମୋହନ ମୂର୍ତ୍ତି ଅଙ୍କା ହୋଇଥିବା ମୋହର ବସାଇଲେ ତଳିଛୁ ମହାପାତ୍ର । ବଡ଼ ଦେଉଳରେ ପହଡ଼ ପଡ଼ିଲା ।

ରତ୍ନସିଂହାସନରେ ବସିବା ବେଳଠାରୁ ଭାଇଭଉଣୀଙ୍କ ମଧ୍ୟରେ ମଝିରେ ମଝିରେ ଦୃଷ୍ଟି ବିନିମୟ ହେଉଥିଲେ ବି, ରୀତି ଅନୁଷ୍ଠାନର ସମାରୋହ ମଧ୍ୟରେ ବିଶେଷ କଥାବାର୍ତ୍ତା ନଥିଲା । ଦୀପାଲୋକର ମୃଦୁ ଆଲୋକ ଭିତରେ ଜଗନ୍ନାଥ ଦେଖିଲେ - ବଡ଼ଭାଇ ବଳରାମ ଗଭୀର ସ୍ନେହରେ ସୁଭଦ୍ରାର ମୁଣ୍ଡ ଆଉଁସି ଦେଉ ଦେଉ କହୁଛନ୍ତି - 'ଶୋଇପଡ଼, ଥକି ପଡ଼ିଛୁ ।' ସୁନାପିଲାଟି ପରି ସୁଭଦ୍ରା ଆଖି ବନ୍ଦ କରି ଶୋଇ ପଡ଼ିବାକୁ ଚେଷ୍ଟା କରୁଥିଲେ । ଜଗନ୍ନାଥ ନିରବରେ ଆଖି ବନ୍ଦ କରିଦେଲେ । ବଳରାମଙ୍କର 'ଶୋଇ ପଡ଼ିଲୁଣି କିରେ !' ଜିଜ୍ଞାସାର ବି ସେ କୌଣସି ଉତ୍ତର ଦେଲେ ନାହିଁ । ଜଗନ୍ନାଥ ଜାଣନ୍ତି, ବଳରାମଙ୍କର ଥରେ ପାଟି ଖୋଲିଲେ, ବନ୍ଦ ହେବାକୁ ସମୟ ଲାଗେ । ଆଉ ସଦ୍ୟ ରଥଯାତ୍ରାରୁ ଫେରିଥିବାରୁ କହିବା ପାଇଁ ତ ଅନେକ କଥା ଅଛି ! ସେ କିଛି ନ କହି ସେଇମିତି ଚୁପ୍‌ଚାପ୍ ଶୋଇ ରହିଲେ ।

କିଛି ସମୟ ପରେ, ଯାତ୍ରାଜନିତ କ୍ଲାନ୍ତିରେ ଅବସନ୍ନ ବଳରାମ ଗଭୀର ନିଦରେ ଶୋଇ ପଡ଼ିଲେ । ଜଗନ୍ନାଥ, ଥରେ ଭାଇଭଉଣୀଙ୍କ ଉପରେ ସତର୍କ ଦୃଷ୍ଟି ବୁଲାଇ ଆଣି, ଖୁବ୍ ସନ୍ତର୍ପଣରେ ଶଯ୍ୟାତ୍ୟାଗ କରି ଧୀରେ ଧୀରେ ବାହାରକୁ ବାହାରି ଆସିଲେ । ବାହାରେ ସେତେବେଳକୁ ଝିପି ଝିପି ବର୍ଷା ଆରମ୍ଭ ହୋଇଯାଇଥାଏ । ଜଗନ୍ନାଥ ସେ ବର୍ଷାକୁ ତିଳେ ହେଲେ ଖାତିର ନକରି ଦ୍ରୁତ ପଦକ୍ଷେପରେ, ସାମାନ୍ୟ ପଥ ଅତିକ୍ରମ କରି ଲକ୍ଷ୍ମୀଙ୍କ ମନ୍ଦିର ଭିତରକୁ ପ୍ରବେଶ କରିଗଲେ ।

'ଲକ୍ଷ୍ମୀ ମନ୍ଦିର'ରେ ସେତେବେଳକୁ ସତେ ଅବା ଉତ୍ସବର ସମାରୋହ । ଉଜ୍ଜ୍ୱଳ ଦୀପାଲୋକରେ ମନ୍ଦିରର ଅଭ୍ୟନ୍ତର ଆଲୋକିତ । ସବୁଠାରେ ସାଜସଜ୍ଜାର ସ୍ୱର୍ଣ୍ଣ ସ୍ପର୍ଶ ସ୍ପଷ୍ଟ । ଜଗନ୍ନାଥ ମନ୍ଦିର ଭିତରକୁ ପ୍ରବେଶ କରିବା ମାତ୍ରେ, ପରିଚାରୀମାନେ ତାଙ୍କୁ ପ୍ରଣାମ କରି ସସମ୍ମାନେ





ଶୟନ ମନ୍ଦିର ଆଡ଼କୁ ପାଛେଟି ନେଇଗଲେ । ଆଶଙ୍କାରେ ତାଙ୍କ ଛାତି ସ୍ପନ୍ଦିତ ହେଉଥାଏ । ଜଗନ୍ନାଥ ଦାସୀମାନଙ୍କ ମୁହଁକୁ ଅନାଉଥାଆନ୍ତି ଓ ସେମାନଙ୍କ ଓଠରେ ଲାଖି ରହିଥିବା ଚେନାଏଁ ଚେନାଏ ରହସ୍ୟମୟ ହସ ଦେଖି ସରସ - ସଂକୋଚରେ ଝାଉଁଳି ପଡୁଥାଆନ୍ତି ।

ଜଗନ୍ନାଥ ଭାବିଥିଲେ, ମନ୍ଦିର ପ୍ରବେଶ ପୂର୍ବରୁ ତାଙ୍କୁ ପୁଣି ହଟହଟା ହେବାକୁ ପଡ଼ିବ । କିଏ ଜାଣେ, ଲକ୍ଷ୍ମୀଙ୍କ କୋପ ଶାନ୍ତ ହେଲାଣି କି ନାହିଁ । ଥରେ ରାଗିଗଲେ, ତାଙ୍କ ମୁଣ୍ଡର ସବୁ ଦୁଆର-ଝରକା ବନ୍ଦ ହୋଇଯାଏ । ସେଥିପାଇଁ ରାଗ ଥଣ୍ଡା ହେବାକୁ ସମୟ ଲାଗେ । ଯଦି ଦାସୀମାନଙ୍କୁ କ'ଣ କହି ଦେଇଥିବେ, ତା'ହେଲେ ତାଙ୍କୁ ପୁଣି ହୀନସ୍ଥା ହେବାକୁ ପଡ଼ିବ । କିନ୍ତୁ ସେପରି କିଛି ଘଟିଲା ନାହିଁ । ସେ ଆଉ କିଛି ଚିନ୍ତା କରିବା ପୂର୍ବରୁ ପରିଚାରୀମାନେ ତାଙ୍କୁ ଶୟନ ମନ୍ଦିର ଭିତରକୁ ପ୍ରେରିତ କରି ଆସ୍ତେ କବାଟ ଆଉଜାଇ ନେଲେ ।

ଜଗନ୍ନାଥଙ୍କ ପାଦ ଶବ୍ଦ ଶୁଣି ଲକ୍ଷ୍ମୀ ପଲଙ୍କ ପାଖରୁ ଦ୍ୱାର ଆଡ଼କୁ ଆଗେଇ ଆସୁଥିଲେ । ଜଗନ୍ନାଥଙ୍କୁ ଭିତରେ ପ୍ରବେଶ କରିବା ଦେଖି ସେ ମୁହଁ ତଳକୁ କରି ସେଇଠି ଅଟକି ଗଲେ । ଜଗନ୍ନାଥ ଏକ ମୁଗ୍ଧ ଆବେଶରେ ପହଁରି ପହଁରି ଲକ୍ଷ୍ମୀଙ୍କ ନିକଟରେ ପହଞ୍ଚିବା ମାତ୍ରେ, ଲକ୍ଷ୍ମୀ ମୁଣ୍ଡର ଓଢ଼ଣାଟିକୁ ଆଉ ଟିକିଏ ତଳକୁ ଟାଣି ଦେଇ ତାଙ୍କ ପାଦ-ପଙ୍କଜରେ ନିବେଦନ କଲେ ଆଭୂମ ପ୍ରଣତି । ଜଗନ୍ନାଥ ଖୁବ୍ ଧୀରେ ନଇଁ ପଡ଼ି ଲକ୍ଷ୍ମୀଙ୍କୁ ଉଠାଇ ନିଜ ଆଡ଼କୁ ଆକର୍ଷଣ କରି ଆଣିଲେ ଓ ତନ୍ମୟ ଦୃଷ୍ଟିରେ ଲକ୍ଷ୍ମୀଙ୍କୁ ଚାହିଁ ରହିଲେ । କେତେ ସମୟ ସେ ସେହିପରି ଅନାଇଥିଲେ, ସେ କଥା ତାଙ୍କର ଖିଆଲରେ ନଥିଲା । ଖିଆଲ ହେବା ବେଳକୁ ସେ ଦେଖିଲେ, ତାଙ୍କ କାନ୍ଧରେ ମୁହଁ ଗୁଞ୍ଜି ଅବୁଝା କିଶୋରୀଟି ପରି ଲକ୍ଷ୍ମୀ କଇଁ କଇଁ ହୋଇ କାନ୍ଦୁଛନ୍ତି । ସେ ହଠାତ୍ କିଛି କହିପାରିଲେ ନାହିଁ । ଧୀରେ ଧୀରେ ଲକ୍ଷ୍ମୀଙ୍କର ମୁଣ୍ଡ ଆଉଁସିବାରେ ଲାଗିଲେ । ଲକ୍ଷ୍ମୀ ସେହିପରି କାନ୍ଦୁଥାଆନ୍ତି । ଜଗନ୍ନାଥ ତାଙ୍କ ମୁହଁକୁ ଉଠାଇ ଧରି ଖୁବ୍ କଅଁଳ ସ୍ୱରରେ କହିଲେ - 'ସତରେ, ଭାରି ଅନ୍ୟାୟ ହୋଇଛି ଲକ୍ଷ୍ମୀ । ରଥଯାତ୍ରାରେ ତୁମେ ସାଙ୍ଗରେ ଯାଇଥିଲେ, କେତେ ଭଲ ହୋଇଥାଆନ୍ତା ! ଭାଇ ଆଉ ସୁଭଦ୍ରା ଯାହା କହନ୍ତୁ ପଛେ, ମୁଁ କିନ୍ତୁ ତୁମର ଅଭାବ ତିଳେ ତିଳେ ଅନୁଭବ କରିଛି । ଲକ୍ଷ୍ମୀ, ତୁମକୁ ମୁଁ କେମିତି ବୁଝାଇବି, ତୁମ ବିନା ମୁଁ କେତେ ଅସହାୟ - କେତେ ଅସଂପୂର୍ଣ୍ଣ !'

ଜଗନ୍ନାଥଙ୍କ ବିଶାଳ ବୁକୁରେ ମୁହଁଗୁଞ୍ଜି ଲକ୍ଷ୍ମୀ ଭିଜାଭିଜା ସ୍ୱରରେ କହିଲେ - 'ମୋର ସବୁ ଅପରାଧ ପାଇଁ କ୍ଷମା ମାଗୁଛି ପ୍ରଭୁ ।'

ଲକ୍ଷ୍ମୀଙ୍କ ଆଖିରେ ତଥାପି ଟଳମଳ ହେଉଥିବା ମୁକ୍ତାସମ ଅଶ୍ରୁବିନ୍ଦୁକୁ ହାତରେ ପୋଛି ଦେଇ, ବେଶ୍ ସହଜ ଭାବରେ ଜଗନ୍ନାଥ କହିଲେ - 'ସେହିପରି କୁହ ନାହିଁ ଲକ୍ଷ୍ମୀ । ଏସବୁ ଦାମ୍ପତ୍ୟ ଜୀବନର ସ୍ୱାଭାବିକ କଥା - ସକାଳର ମେଘ ପରି । କ୍ଷମା ମାଗିବା ଆବଶ୍ୟକ ନାହିଁ ।' ତା'ପରେ ଦଣ୍ଡେ ଅଟକି ଯାଇ କହିଲେ, 'ତୁମ ବିରହରେ ମୁଁ ଅନେକ କଷ୍ଟ ପାଇଛି ଠିକ୍, କିନ୍ତୁ ବିରହ ନଥିଲେ ମିଳନର ବା କି ସୁଖ ! ଏ ରଥଯାତ୍ରା ତ ଆମ ପାଇଁ ବିରହର ସେଇ ଚମତ୍କାର ସୁଯୋଗଟିଏ ସୃଷ୍ଟି କରିଛି । ତମେ ଏଥିପାଇଁ ଦୁଃଖ କାହିଁକି କରୁଛ ଲକ୍ଷ୍ମୀ ? ସେଇ ବିରହାବସ୍ଥାରେ ତ ତୁମକୁ ମୁଁ ପାଇଥିଲି ଆହୁରି ନିବିଡ଼ ଭାବରେ । ସେଥିପାଇଁ ଯାତ୍ରାର ସବୁ କଷ୍ଟ ମୁଁ ଭୁଲିଯାଇ ପାରୁଥିଲି, ସବୁ କଷ୍ଟକୁ ତୁଚ୍ଛ କରି ଦେଇଥିଲି ।' ଜଗନ୍ନାଥ ଚୁପ୍ ହୋଇଗଲେ । ତା'ପରେ କିଛିକ୍ଷଣ ପାଇଁ ମନ୍ଦିର ଭିତରେ ଖେଳିଗଲା ନିରନ୍ଧ୍ର ନିରବତା ।

କିଛି ସମୟ ପରେ, ଲକ୍ଷ୍ମୀ ଜଗନ୍ନାଥଙ୍କ ହାତ ଧରି ଧୀରେ ଧୀରେ ପଲଙ୍କ ଆଡ଼କୁ ଆଗେଇ ଗଲେ । ଲକ୍ଷ୍ମୀଙ୍କ ଶ୍ରୀହସ୍ତର ଦିବ୍ୟ ସ୍ପର୍ଶରେ ଜଗନ୍ନାଥଙ୍କ ପ୍ରାଣ - ମନ ପୁଲକିତ ହୋଇ ଉଠୁଥିଲା । ସେ ଲକ୍ଷ୍ମୀଙ୍କୁ କୋଳାଗ୍ରତ କରିବା ପାଇଁ ଦୁଇ ହାତ ପ୍ରସାରିତ କଲା ବେଳକୁ, ଲକ୍ଷ୍ମୀ ପବନ ବାଉଳା କୁସୁମ ଲତାଟିଏ ପରି ଜଗନ୍ନାଥଙ୍କ କମ୍ପିତ କୋଳରେ ଲୋଟି ପଡ଼ିଲେ ।

ବାହାରେ ଅନେକ ଆଗରୁ ନିରବ ହୋଇଯାଇଥିଲା ମେଘ । କିନ୍ତୁ ବିରହ-ତାପିତ ଦୁଇଟି ପ୍ରାଣରେ ସେତେବେଳକୁ ଧ୍ୱନିତ ହେଉଥିଲା ମିଳନର ମେଘ ମହ୍ଲାର... ।

ଶଙ୍ଖନାଭି
ସର୍ବୋଦୟ ନଗର
ଆଶ୍ରମ ରୋଡ଼, ପୁରୀ-୨







# ଶ୍ରୀଜଗନ୍ନାଥ ଓ ମା' ଲକ୍ଷ୍ମୀ

ଶିବସୁନ୍ଦର ପଟ୍ଟନାୟକ



ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥ ନିଜ ଭାଇ ଓ ଭଉଣୀଙ୍କୁ ନେଇ ଶ୍ରୀଗୁଣ୍ଡିଚା ମନ୍ଦିରକୁ ନବଦିନ ଯାତ୍ରା ବେଳେ ମା' ଲକ୍ଷ୍ମୀଙ୍କୁ ନନେବାରୁ ସେ ରୁଷ୍ଟ ହୋଇ ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ନନ୍ଦିଘୋଷ ରଥ ଭାଙ୍ଗିବା ଓ ପରେ ଶ୍ରୀଜଗନ୍ନାଥଙ୍କୁ ସିଂହଦ୍ୱାର ବନ୍ଦ କରି ମନ୍ଦିର ମଧ୍ୟରେ ପ୍ରବେଶ କରାଇ ନଦେବା ଦୃଶ୍ୟ ଆମ୍ଭେମାନେ ଦେଖିବାକୁ ସୁଯୋଗ ପାଉ ଓ ଆନନ୍ଦ ଅନୁଭବ କରୁ । ଆମ୍ଭମାନଙ୍କ ମଧ୍ୟରୁ କେତେକ ନିଜ ଦାମ୍ପତ୍ୟ ଜୀବନରେ ଏହାର ଉଦାହରଣ ଦେଇ ସ୍ୱାମୀସ୍ତ୍ରୀ ସଂପର୍କରେ ତିକ୍ତତା ଆଣନ୍ତି । ମାତ୍ର ମା' ଲକ୍ଷ୍ମୀ ସକଳ ଜଗତକର୍ତ୍ତା ଶ୍ରୀଜଗନ୍ନାଥଙ୍କର ସଙ୍ଗ ଛାଡ଼ନ୍ତି କି ? ଏହାର ଉତ୍ତରରେ ନିଶ୍ଚୟ ନାହିଁ ଶବ୍ଦ ଆସିବ ।

ଶ୍ରୀଜଗନ୍ନାଥ ମନ୍ଦିରର ରତ୍ନସିଂହାସନରେ ଉପବେଶନ କରିଥିବା ସପ୍ତାଦେଶ ଅବତାର-ଶ୍ରୀବଳଭଦ୍ର (ଶିବ), ଶ୍ରୀସୁଭଦ୍ରା (ବ୍ରହ୍ମା), ଶ୍ରୀଜଗନ୍ନାଥ (ପରମାତ୍ମା ଭଗବାନ), ଶ୍ରୀସୁଦର୍ଶନ (ସୂର୍ଯ୍ୟ), ଶ୍ରୀ (ଲକ୍ଷ୍ମୀ), ଧୀ (ସରସ୍ୱତୀ) ଓ ମାଧବଙ୍କୁ ଦେଖିବାକୁ ପାଉଅଛେ । ତେଣୁ ମହାଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କ ସଙ୍ଗ ଛାଡୁ ନାହାନ୍ତି । ଶ୍ରୀଜୀଉଙ୍କର ପଦସେବା ଲାଗି ସଦାସର୍ବଦା ଉଦ୍ୟତ । (ପ୍ରକାଶ ଥାଉକି କେତେକ ଧୀଦେବୀ ବଦଳରେ ଭୂଦେବୀ (ମାୟାଦେବୀ)ଙ୍କୁ ନେଇଥାନ୍ତି । ପ୍ରସଙ୍ଗ କିନ୍ତୁ ଶ୍ରୀଜଗନ୍ନାଥ ଓ ମା' ଲକ୍ଷ୍ମୀଙ୍କ ସମ୍ବନ୍ଧରେ ଆଧାରିତ ।) ଶ୍ରୀମନ୍ଦିର ପରିସରରେ ମହାଲକ୍ଷ୍ମୀ ମନ୍ଦିରରେ ସମ୍ମୁଖଭାଗ ପାର୍ଶ୍ୱଦ ଶ୍ରୀଲକ୍ଷ୍ମୀ ନୃସିଂହ ମୂର୍ତ୍ତି ଆମେ ଦେଖିବାକୁ ପାଉଅଛେଁ । ସେଠାରେ ଭଗବାନଙ୍କ ଅଙ୍କରେ ମା' ବସିଅଛନ୍ତି । ଏସବୁ ବାହ୍ୟ ଦୃଶ୍ୟ କଥା । ଏ ବାବଦରେ ଶାସ୍ତ୍ରଗତ ସାମାନ୍ୟ କଥା ଚିନ୍ତା କରାଯାଉ ।

ଋଗ୍ ବେଦର ଶ୍ରୀସୂକ୍ତରେ ଶ୍ରୀ ବା ଲକ୍ଷ୍ମୀଙ୍କର ଯେଉଁ ଯେଉଁ ନାମ ବର୍ଣ୍ଣନା କରାଯାଇଅଛି ସେଥିମଧ୍ୟରୁ ଲକ୍ଷ୍ମୀଙ୍କର ଦୁଇଟି ନାମ 'ହିରଣ୍ ବର୍ଣ୍ଣା ହରିଣୀମ୍' ଦର୍ଶାଯାଇଅଛି । ସୁତରାଂ ଲକ୍ଷ୍ମୀ 'ହିରଣ୍ୟବର୍ଣ୍ଣା' ବା ହଳଦି ଗଣ୍ଠିପରି ସୁନ୍ଦରୀ ନାରୀ ଅଟନ୍ତି ଏବଂ ତାଙ୍କର ନେତ୍ର ଯୁଗଳ ହରିଣୀ ପରି ଦୀର୍ଘ ନେତ୍ର ଅଟେ । ଏହା ବିଷ୍ଣୁ ପତ୍ନୀଙ୍କର ପ୍ରକୃତ ପରିଚୟ ନୁହେଁ । 'ହରିଣ୍ୱର୍ଣ୍ଣା' ନାମର ପ୍ରକୃତ ଅର୍ଥ ହେଲା 'ସ୍ପୃହଣୀୟ' - ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କୁ ଆନନ୍ଦ ବିଳାସ ଦେବା ପାଇଁ ଉପଯୁକ୍ତ ବର୍ଣ୍ଣର ଅଟନ୍ତି । 'ହରିଣୀ' ଶବ୍ଦ ବିଶ୍ଳେଷଣ - 'ହରି ନିୟତି ଚେତନମିତି ହରିଣୀ' - ଅର୍ଥାତ୍ ମା' ଲକ୍ଷ୍ମୀ ଆମ୍ଭମାନଙ୍କର ସାଂସାରିକ ଚେତନା ହରଣ କରି ଶ୍ରୀଜଗନ୍ନାଥଙ୍କ ଆଶ୍ରିତ କରାଇଥାନ୍ତି ଏବଂ ପ୍ରଭୁଙ୍କର କୃପାପାତ୍ର କରାଇଥାନ୍ତି ।

ଲକ୍ଷ୍ମୀ ବା ଶ୍ରୀଙ୍କର ଛଅଟି କାର୍ଯ୍ୟ ଅଟେ ।

'ଶ୍ରିତାସ୍ୟନୈଃ ସର୍ବୈଃ ଶ୍ରୟଷିରମଣଂ ସଂଶ୍ରିତଗିରଃ
ଶୃଣୋଷି ପେୟାଂସଂ ଶ୍ରିତଜନ ବଚଃ ଶ୍ରାବୟସି ଚ ।
ଶୃଣାସୌତ ଦୌଷାଞ୍ଜନନି ନିଖିଳାନ୍ ସର୍ବ ଜଗତାଂ
ଗୁଣୈଃ ଶ୍ରୀଣାସିତ୍ୱ ତଦିହ ଭବତୀ ଶ୍ରୀରିତି ବିଦୁଃ ॥'

ହେ ଜନନି ! (୧) ଆପଣ ଜୀବମାନଙ୍କଦ୍ୱାରା ସେବିତ, (୨) ଶ୍ରୀଜଗନ୍ନାଥଙ୍କ ସେବାରେ ନିଯୁକ୍ତ, (୩) ଆଶ୍ରିତମାନଙ୍କ ପ୍ରାର୍ଥନା ଶୁଣନ୍ତି, (୪) ତାହା ଶ୍ରୀଜଗନ୍ନାଥଙ୍କୁ ଶୁଣାନ୍ତି, (୫) ଆଶ୍ରିତଙ୍କ ଦୋଷ ବିନାଶ କରନ୍ତି ଏବଂ ଆପଣଙ୍କ ଦିବ୍ୟଗୁଣରେ ଜଗତକୁ ବିସ୍ତାର କରନ୍ତି ।

ସୁତରାଂ ଜୀବମାନଙ୍କ କଲ୍ୟାଣ ପାଇଁ ଯଦି ଲକ୍ଷ୍ମୀ ସଦାବେଳେ ଚେଷ୍ଟିତ ଓ ସେମାନଙ୍କ ପ୍ରାର୍ଥନା ଶ୍ରୀଜଗନ୍ନାଥଙ୍କୁ ଶୁଣାଇ ଜୀବଙ୍କ ଦୁଃଖ ଦୂର କରି ଶ୍ରୀଜଗନ୍ନାଥଙ୍କ ଶରଣାପନ୍ନ କରାଇ ପାରୁଥିବା ମାତୃଶକ୍ତି ଶ୍ରୀଜଗନ୍ନାଥଙ୍କ ପାଖେ ପାଖେ ନ ରହିବେ ତେବେ ଦୁନିଆ ଧ୍ୱଂସ ହୋଇଯିବ । ନବଦିନ ଯାତ୍ରାରେ ଆମେ ବାହ୍ୟ ଦୃଷ୍ଟିରେ ଦେଖୁଅଛେ ଯେ ଶ୍ରୀଜଗନ୍ନାଥ ଲକ୍ଷ୍ମୀ ଠାକୁରାଣୀଙ୍କୁ ନେଲେ ନାହିଁ । ମାତ୍ର ଏତେ ଲୋକ ଆସୁଅଛନ୍ତି କାହିଁକି ? ଅଗଣିତ ଭକ୍ତମାନଙ୍କ ପ୍ରାର୍ଥନା ରଥଯାତ୍ରା ବେଳେ ଶ୍ରୀଜଗନ୍ନାଥଙ୍କୁ କିଏ ଶୁଣାଇ ଦୁଃଖ ଲାଘବ କରୁଥିବ ! ବାହ୍ୟ ଚକ୍ଷୁରେ ଦେଖା ନଗଲେ ମଧ୍ୟ ଶ୍ରୀଜଗନ୍ନାଥ ସଦାସର୍ବଦା ଶ୍ରୀଯୁକ୍ତ ।





ଲକ୍ଷ୍ମୀ ତାଙ୍କର କେବେହେଲେ ପାଖ ଛାଡୁ ନାହାନ୍ତି । ତାଙ୍କ ଅଙ୍କରେ ବସିଅଛନ୍ତି ଓ ବକ୍ଷସ୍ଥଳ ସ୍ପର୍ଶ କରୁଅଛନ୍ତି ।

ଏହି କଥା ଆଦି ଶଙ୍କରାଚାର୍ଯ୍ୟ ସ୍ୱୀକାର କରି ସ୍ତୁତି କଲେ - 'ଶ୍ରୀୟା ଶ୍ଳିଷ୍ଟ ବିଷ୍ଣୁ ....' ପରାଶର ମହର୍ଷି ଶ୍ରୀମୈତ୍ରେୟ ଋଷିଙ୍କୁ ଭଗବାନ ଓ ଲକ୍ଷ୍ମୀଙ୍କ ପରସ୍ପର ସମ୍ବନ୍ଧ ବିଷୟରେ ଶ୍ରୀବିଷ୍ଣୁ ପୁରାଣରେ ପ୍ରଥମ ଅଂଶ ଅଷ୍ଟମ ଅଧ୍ୟାୟର ୧୭ରୁ ୩୫ ଶ୍ଳୋକ ଭିତରେ ବିଶଦ ରୂପେ ବର୍ଣ୍ଣନା କରି କହିଅଛନ୍ତି ଯେ, ବିଷ୍ଣୁଙ୍କ କେବେ ସଙ୍ଗ ଛାଡୁ ନ ଥିବା ଜଗତମାତା ଲକ୍ଷ୍ମୀ ନିତ୍ୟ ଏବଂ ଯେଉଁ ପ୍ରକାରେ ସର୍ବବ୍ୟାପକ ଲକ୍ଷ୍ମୀ ମଧ୍ୟ ସେହିପରି ଅଟନ୍ତି । ସେ ମଧ୍ୟ ସ୍ୱୀକାର କରିଅଛନ୍ତି ଯେ କି ଦେବ, ତୀର୍ଯ୍ୟକ୍ ଓ ମନୁଷ୍ୟ ଆଦିରେ ପୁରୁଷାର୍ଥ ଶବ୍ଦ ଶ୍ରୀହରି ବା ଶ୍ରୀଜଗନ୍ନାଥ ଏବଂ ସ୍ତ୍ରୀବାଚକ ଶବ୍ଦ ଲକ୍ଷ୍ମୀ ଅଟନ୍ତି । ସେହି ବିଶ୍ଳେଷଣରୁ ଆମ୍ଭେମାନେ ଜାଣିବାକୁ ପାଉଅଛେଁ ଯେ ଶ୍ରୀଜଗନ୍ନାଥ ଯେତେ ଯେତେ ଅବତାର ବା ଦେବତା ରୂପ ନେଇ ଅଛନ୍ତି ମା' ଲକ୍ଷ୍ମୀ ତାଙ୍କର ସେବିକା ରୂପେ ତାଙ୍କର ଅନୁଗାମିନୀ ହୋଇଛନ୍ତି । ଶ୍ରୀଜଗନ୍ନାଥ କେବେହେଲେ ଲକ୍ଷ୍ମୀଙ୍କୁ ଛାଡ଼ି ନାହାନ୍ତି । ବରଂ ସେ ଲକ୍ଷ୍ମୀଯୁକ୍ତ ଅଟନ୍ତି ।

ଶ୍ରୀଜଗନ୍ନାଥ ପୂର୍ଣ୍ଣ ସତ୍ୱମୟ ଅଟନ୍ତି । ଏ ବାବଦରେ ବେଦ, ପୁରାଣ ଇତ୍ୟାଦି ସକଳ ଧର୍ମ ଗ୍ରନ୍ଥରେ ସ୍ୱୀକୃତ ହୋଇଅଛି । ମା' ଲକ୍ଷ୍ମୀ ମଧ୍ୟ ଏହି ସତ୍ୱକୁ ଆଶ୍ରା କରନ୍ତି । ନିମ୍ନଲିଖିତ ଶ୍ଳୋକଟି ଏହାର ଆଭାସ ଦେବ ।

'ଯତଃ ସତ୍ୱଂ ତତୋ ଲକ୍ଷ୍ମୀଃ ସତ୍ୱଂ ଭୂତ୍ୟନୁସାରି ଚ ।
ନିଃ ଶ୍ରୀକାଣାଂ କୁତଃ ସତ୍ୱଂ ବିନା ତେନ ଗୁଣାଃ କୁତଃ ।'
(ଶ୍ରୀବିଷ୍ଣୁ ପୁରାଣ - ଅଂଶ ୧।୯।୨୯)

ଯେଉଁଠାରେ ସତ୍ୱ ଅଛି ସେଠାରେ ଲକ୍ଷ୍ମୀ ରହନ୍ତି ଏବଂ ସତ୍ୱ ମଧ୍ୟ ଲକ୍ଷ୍ମୀଙ୍କର ସାଥୀ ଅଟନ୍ତି । ଶ୍ରୀହୀନ ହେଲେ ସତ୍ୱ କେଉଁଠୁ ଆସିବ ? ସ୍ୱର ଗୁଣ ବିନା କିପରି ତିଷ୍ଠି ପାରିବ ?

'ଶ୍ରୀମଧ୍ ଭାଗବତମ୍'ରେ ବର୍ଣ୍ଣନା ଅଛି -

'ତତ୍ ଆରଭ୍ୟ ନନ୍ଦସ୍ୟ ବ୍ରଜଃ ସର୍ବ ସମୃଦ୍ଧିମାନ୍ ।
ହରେ ନିର୍ବାସାତ୍ମଗୁଣୈ ରମା କ୍ରୀଡ଼ମଭୂନ୍ନୃପ ।'
(ଶ୍ରୀମଦ୍ ଭାଗବତମ୍ - ସ୍କନ୍ଧ ୧୦।୫।୧୮)
(ଶୁକ ପରିକ୍ଷୀତଙ୍କୁ)

ସେହି ସମୟରୁ ଅର୍ଥାତ୍ ବସୁଦେବ ଶ୍ରୀକୃଷ୍ଣଙ୍କୁ ନନ୍ଦ ଗୃହରେ ଛାଡ଼ି ଆସିଲା ପରେ ନନ୍ଦଙ୍କର ଓ ବ୍ରଜର ସମସ୍ତ ସମୃଦ୍ଧିମାନ ହେଲା । ଶ୍ରୀହରିଙ୍କର ବା ଶ୍ରୀକୃଷ୍ଣଙ୍କର ବା ଶ୍ରୀଜଗନ୍ନାଥଙ୍କର ନିବାସ ହେତୁ ତାହା ରମା ବା ଲକ୍ଷ୍ମୀଦେବୀଙ୍କର କ୍ରୀଡ଼ା ସ୍ଥଳ ହୋଇଗଲା ।

ବାଲ୍ମିକୀ ରାମାୟଣରେ ମା' ସୀତା କହିଅଛନ୍ତି ଯେ, 'ଅନନ୍ୟା ରାଘବେଣାହଂ ଭାସ୍କରେଣ ଯଥା ପ୍ରଭା' (ବା. ରା. - କାଣ୍ଡ ୫।୨୧।୧୫) ଏବଂ ଶ୍ରୀରାମଚନ୍ଦ୍ର ମଧ୍ୟ କହିଅଛନ୍ତି ଯେ, 'ଅନନ୍ୟା ହି ମାୟା ସୀତା ଭାସ୍କରସ୍ୟ ପ୍ରଭା ଯଥା' (ବା.ରା. କାଣ୍ଡ ୬।୧୧୮।୧୯) । ସୁତରାଂ ଶ୍ରୀରାମଚନ୍ଦ୍ର ଭାସ୍କର ବା ସୂର୍ଯ୍ୟ ହେଲେ ସୀତା ଠାକୁରାଣୀ ତା'ର ପ୍ରଭା ବା କିରଣ ସଦୃଶ୍ୟ ଅଟନ୍ତି । ସମସ୍ତେ ଜାଣନ୍ତି ଯେ ଶ୍ରୀରାମସୀତା, ଶ୍ରୀକୃଷ୍ଣରକୁଣୀ ଏବଂ ଶ୍ରୀଜଗନ୍ନାଥଲକ୍ଷ୍ମୀ ସ୍ୱାମୀ ଓ ସ୍ତ୍ରୀ ଅଟନ୍ତି, ମା' ଲକ୍ଷ୍ମୀ ଭଗବାନଙ୍କର ଅନୁଗାମିନୀ ଓ ସେବାକାରିଣୀ ଅଟନ୍ତି । ପରସ୍ପର ଅନୁପୂରକ ଅଟନ୍ତି । ମାତ୍ର ପ୍ରତିବାଦୀ ନୁହନ୍ତି ।

ପ୍ରଶ୍ନ ଉଠେ ଭଗବାନ ଶ୍ରୀକୃଷ୍ଣ କ'ଣ ଷୋଳହଜାର ଶହେ ଏଗାରଟି ସ୍ତ୍ରୀ ଗ୍ରହଣ କରିଥିଲେ ? ପ୍ରକୃତରେ ଏହି ସମସ୍ତ ସ୍ତ୍ରୀ ଲକ୍ଷ୍ମୀଙ୍କର ଅଂଶବିଶେଷ ଅଟନ୍ତି । ବ୍ରହ୍ମାକୃତ 'ଶ୍ରୀଗୋବିନ୍ଦ ସ୍ତବ'ରେ ବର୍ଣ୍ଣନା ଅଛି - 'ଲକ୍ଷ୍ମୀ ଶତ ସହସ୍ର ସମ୍ଭ୍ରବ ସେବ୍ୟମାନ' - ଅର୍ଥାତ୍ ଭଗବାନଙ୍କୁ ଲକ୍ଷେ ଲକ୍ଷ୍ମୀ ସେବା କରୁଅଛନ୍ତି । ପ୍ରକୃତରେ ତାହା ନୁହଁ । ଏହାର ସମାଧାନ 'ଶ୍ରୀମଦ୍ ଭାଗବତମ୍' ଧର୍ମ ଗ୍ରନ୍ଥରେ ଅଛି -

'ଶ୍ରୀର୍ଯତ୍ର ରୂପିଣ୍ୟୁରୁଗାୟ ପାଦୟୋଃ
କରୋତି ମାନଂ ବହୁଧା ବିଭୂତିଭିଃ,
ପ୍ରେର୍ଙ୍ଖ୍ୟାଂଶ୍ରିତା ୟା କୁସୁମାକରାନୁଗୈ-
ର୍ବିଗୀୟମାନା ପ୍ରିୟ-କର୍ମ ଗାୟତି ।'
(ଶ୍ରୀମଦ୍ ଭାଗବତମ୍ - ସ୍କନ୍ଧ ୨।୯।୧୩)

ଭଗବାନ ବ୍ରହ୍ମାଙ୍କ ବୈକୁଣ୍ଠ ଲୋକ ଦେଖାଇବାରେ ବ୍ରହ୍ମା ଦେଖିଲେ ଯେ ଲକ୍ଷ୍ମୀ ସୁନ୍ଦର ସୁନ୍ଦର ରୂପ ଧାରଣ କରି ନିଜ ବିଭୂତି ଦ୍ୱାରା ଅନେକ ଲକ୍ଷ୍ମୀ ରୂପେ ପ୍ରକଟ ହୋଇ ଭଗବାନଙ୍କ ଚରଣରେ ଅନେକ ପ୍ରକାରର ସେବା କରୁଅଛନ୍ତି । କେବେ କେବେ ସେ ଦୋଳିରେ ବସି ନିଜ ପ୍ରିୟତମ ଭଗବାନଙ୍କ ଲୀଳା ଗାନ କରନ୍ତି । ତାଙ୍କର ସୌନ୍ଦର୍ଯ୍ୟ ଓ ସୁରଭିରୁ ଉତ୍ପନ୍ନ ହୋଇ ଭ୍ରମର ସ୍ୱୟଂ ଲକ୍ଷ୍ମୀଙ୍କର ଗୁଣ ଗାନ କରେ ।

ଏହାର ତାତ୍ପର୍ଯ୍ୟ ହେଲା ଲକ୍ଷ୍ମୀ ଏକ, ମାତ୍ର ଭଗବାନଙ୍କ ସେବା ଲାଗି ନିଜ ବିଭୂତିଦ୍ୱାରା ଅନେକ ରୂପରେ ପ୍ରକଟିତ ହୋଇ ଶ୍ରୀଜଗନ୍ନାଥଙ୍କ ସେବାରେ ରତ । ତେଣୁ ଶ୍ରୀଜଗନ୍ନାଥ ଓ ମା' ଲକ୍ଷ୍ମୀଙ୍କର ଏକ ଅତୁଟ ସମ୍ବନ୍ଧ । ତା'ର ଖିଲାପ ହେଲେ ଶ୍ରୀଜଗନ୍ନାଥଙ୍କର ସେବା କିଏ କରିବ !

ଆମ୍ଭେମାନେ ଦେଖୁଅଛେ ଯେ ଗୁଣ୍ଡିଚା ମନ୍ଦିର ନିକଟରେ ମା' ଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଭାଙ୍ଗି ଦିଅନ୍ତି । ରଥ ଭାଙ୍ଗି ଦେଲେ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରକୁ ଫେରିପାରିବେ ନାହିଁ କି ? ବିଶ୍ୱକର୍ମାଙ୍କୁ ଆଦେଶ ଦେଲେ ପୁଣି ଏକ ସୁନ୍ଦର ରଥ ତିଆରି ହୋଇଯିବ । ଏହା କହିବାଦ୍ୱାରା ଶ୍ରୀଜଗନ୍ନାଥଙ୍କ ଦିବ୍ୟରଥ ଶ୍ରୀନନ୍ଦିଘୋଷଙ୍କୁ ଅସମ୍ମାନିତ କରାଯାଉନାହିଁ । ପ୍ରଭୁଙ୍କର ନୂଆ ନୂଆ ଜିନିଷ ପ୍ରତି ଆଗ୍ରହ ଲାଗି ଆମେ ଆନନ୍ଦ ପାଉନାହେଁ କି ? ପ୍ରଭୁଙ୍କ ପାଇଁ ଯୁକ୍ତ ଶବ୍ଦ 'ନବନବାୟମାନ' ବ୍ୟବହାର ହୁଏନି କି ? ପକ୍ଷୀରାଜ ଗରୁଡ଼ ମହାରାଜଙ୍କ ପୃଷ୍ଠରେ ବସି ମଧ୍ୟ ଶ୍ରୀମନ୍ଦିର ଫେରିପାରିବେ । ମାତ୍ର ଶ୍ରୀଜଗନ୍ନାଥ ଯଦି ଚାଲି ଚାଲି ଶ୍ରୀମନ୍ଦିର ଫେରନ୍ତେ ଆମେ ତାଙ୍କ ପାଦରେ ଥିବା ସାଙ୍କେତିକ ଚିହ୍ନଗୁଡ଼ିକ ଶରଧାବାଲିରେ ପଡ଼ିଥିବା ଦେଖିବାକୁ ସୁଯୋଗ ପାଆନ୍ତେ ।

ଆଡ଼ଭୋକେଟ, ଜେଲ୍‌ରୋଡ଼, ଖୋର୍ଦ୍ଧା





# ପୁରୁଷୋତ୍ତମ ଓ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ

ଡଃ ନାରାୟଣ ବାବା

ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ଭାବେ ବିଦିତ । ଏହି ପୁରୁଷୋତ୍ତମ ଜଗନ୍ନାଥଙ୍କୁ ନିଜସ୍ୱ କରିବା ପାଇଁ ବ୍ରାହ୍ମଣ୍ୟଧର୍ମ ବେଦ, ଉପନିଷଦ, ପୁରାଣ, ଦର୍ଶନଶାସ୍ତ୍ର, କାବ୍ୟ ଇତିହାସ ପ୍ରଭୃତି ବହୁ ଉପାଦାନ ଖୋଜା ଯାଇଛି । ବେଦର ପୁରୁଷଚେତନା, ଭଗବଦ୍ ଗୀତାର ପୁରୁଷୋତ୍ତମ ଚେତନା, ଭାଗବତ ଧର୍ମ, କୃଷ୍ଣ ବାସୁଦେବ ଉପାସନା, ମାଧବ ଉପାସନା ଓ ଆଧୁନିକ ବୈଷ୍ଣବ ଧର୍ମ ସହିତ ଜଗନ୍ନାଥଙ୍କୁ ଜଡ଼ିତ କରିବା ପାଇଁ ଅପାତତଃ ବହୁ ବଳିଷ୍ଠ ପ୍ରମାଣ ସଂଗ୍ରହ କରାଯାଇ ପାରିଛି ।



ଭାରତୀୟ ଦର୍ଶନ ଶାସ୍ତ୍ରରେ ପୁରୁଷ ଶବ୍ଦଟିକୁ ପରମାତ୍ମାଙ୍କ ଅର୍ଥରେ ବ୍ୟବହାର କରାଯାଇଛି । ଦର୍ଶନ ମତରେ ପୁରୁଷ ହିଁ ଅମୃତ ତତ୍ତ୍ୱର ଆଧାର । ତାହାକୁ ସମଗ୍ର ବିଶ୍ୱର ଆଧାର ଓ ସୃଷ୍ଟି, ସ୍ଥିତି, ବିଲୟର କାରଣ ଭାବରେ ଅଭିହିତ କରାଯାଇଛି । ଋଗ୍‌ବେଦରେ ସେହି ପୁରୁଷଙ୍କୁ ସ୍ୱୟଂ ଅମୃତ ଓ ଅମୃତତତ୍ତ୍ୱର ନିୟାମକ ଭାବେ ବର୍ଣ୍ଣନା କରାଯାଇଛି । ସେ ମର୍ତ୍ତ୍ୟ, ଅନ୍ତରୀକ୍ଷ ଓ ସ୍ୱର୍ଗକୁ ଆଧେୟ କରି ସମସ୍ତଙ୍କୁ ପାଳନ କରୁଛନ୍ତି (୧) ଋଗବେଦର ମନ୍ତ୍ରର ଭାଷ୍ୟ ରଚନା କରି ସାୟଣାଚାର୍ଯ୍ୟ ଉଲ୍ଲେଖ କରିଛନ୍ତି, ଦାରୁ ହିଁ ପୁରୁଷୋତ୍ତମ ।(୨) ଅନେକ ପଣ୍ଡିତ ଅପୁରୁଷ ଶବ୍ଦରେ ପୁରୁଷୋତ୍ତମ ଅର୍ଥ ସୂଚୀତ ହେଉ ନାହିଁ ବୋଲି କହନ୍ତି । ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଜଗନ୍ନାଥ ହିନ୍ଦୁମାନଙ୍କର ପରମ ଆରାଧ୍ୟ ଦେବତା ହୋଇ ଉଠିଛନ୍ତି । ତେଣୁ ଦାରୁ ଦେବତାଙ୍କ ବୈଷ୍ଣବତ୍ୱ ପ୍ରତିପାଦନ ପାଇଁ ତତ୍କାଳୀନ ସାୟଣାଚାର୍ଯ୍ୟ (୧୩୦୦-୧୩୮୦)ଙ୍କର ଏହା ଏକ ଚେଷ୍ଟା ବୋଲି ମତାମତ ପୋଷଣ କରାଯାଇଛି । ତେବେ ଅପୁରୁଷଙ୍କୁ ପୁରୁଷ କରି ତାହାଙ୍କ ମାଧ୍ୟମରେ ପରସ୍ତର (ବୈଷ୍ଣବଲୋକ)କୁ ଯିବା ପାଇଁ ଋଷି ଦୁର୍ହଣଙ୍କୁ ଉପଦେଶ ଦେଇଥିବା ଧରାଗଲେ ସେଥିରେ ତତ୍କାଳୀନ ପୁରୁଷ ବା ପୁରୁଷୋତ୍ତମ ଉପାସନାର ସୂଚନା ମିଳିଥାଏ ।

ଉପନିଷଦମାନଙ୍କରେ ଯେଉଁ ପୁରୁଷଙ୍କ ପ୍ରଶସ୍ତିଗାନ କରାଯାଇଛି ସେଥିରୁ ସୂଚୀତ ହେଉଛି ପୁରୁଷ ହିଁ ପୂର୍ଣ୍ଣତମ ।(୩) ସେ ନିଖିଳ ବିଶ୍ୱର ସ୍ରଷ୍ଟା, ହସ୍ତପାଦ ନଥାଇ ମଧ୍ୟ ସେ ସର୍ବାଧିକାରୀ । ଚକ୍ଷୁ ନଥାଇ ସେ ସମଦର୍ଶୀ । କର୍ଣ୍ଣନଥାଇ ସେ ସର୍ବଶ୍ରୋତା । ସେ ସର୍ବଜ୍ଞ ଓ ଅଚିନ୍ତ୍ୟ ଶକ୍ତି(୪) ଭଗବଦ୍ ଗୀତାର ପୁରୁଷୋତ୍ତମ ଯୋଗର ବ୍ୟାଖ୍ୟା ବେଳେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ -

ଯସ୍ମିନ୍‌କ୍ଷର ମତୀତୋ ହଂ କ୍ଷରାଦପି
ଚୋତ୍ତମଃ
ଅତୋସ୍ମିନ୍ ଲୋକ ବେଦେ ଚ ପ୍ରଥିତଃ
ପୁରୁଷୋତ୍ତମଃ ।(୫)

ଅର୍ଥାତ୍ ମୁଁ କ୍ଷର (ବିନାଶଶୀଳ ଶରୀର) ଓ ଅକ୍ଷର (ଅବିନାଶ ଚୈତନ୍ୟ)ଠାରୁ ଅତୀତ ଓ ଉତ୍କୃଷ୍ଟ । ଏହି ହେତୁ ଲୋକସମୂହରେ ଓ ବେଦରେ ପୁରୁଷୋତ୍ତମ ନାମରେ ବିଖ୍ୟାତ । ଗୀତାର ସମୟ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀ ବୋଲି ଅନୁମାନ କରାଯାଇଛି । ତେଣୁ ସେତେବେଳକୁ ଲୋକସମୂହ ମଧ୍ୟରେ ପୁରୁଷୋତ୍ତମ ଉପାସନା ପ୍ରଚଳିତ ହୋଇସରିଥିଲା ।

ଯୋଗ ଓ ଦର୍ଶନ ଶାସ୍ତ୍ରରେ ପୁରୁଷ ଓ ପ୍ରକୃତିର ନିୟାମକ ଭାବରେ ଜଣେ ପ୍ରଧାନ ପୁରୁଷଙ୍କର କଳ୍ପନା କରାଯାଇଥିଲା ଏବଂ ତାଙ୍କୁ ପୁରୁଷୋତ୍ତମ ଭାବରେ ଅଭିହିତ କରାଯାଇଥିଲା । ଏହି ତଥ୍ୟକୁ ଭିତ୍ତିକରି ପଣ୍ଡିତ ନୀଳକଣ୍ଠ ଦାସ ପୁରୁଷୋତ୍ତମ ଉପାସନାର ଉନ୍ମେଷ ଖ୍ରୀଷ୍ଟପୂର୍ବ ସମୟର ବୋଲି ଅନୁମାନ କରିଛନ୍ତି ।(୬) ତେବେ ବେଦ ଉପନିଷଦମାନଙ୍କରେ ଉଲ୍ଲିଖିତ ଏହି ପୁରୁଷ ବା ପୁରୁଷୋତ୍ତମ ଶବ୍ଦକୁ ଭିତ୍ତିକରି ଆମେ ଉତ୍କଳର ପୁରୁଷୋତ୍ତମ କ୍ଷେତ୍ରସ୍ଥ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଉପାସନା ଓ ପ୍ରତିଷ୍ଠା ସମ୍ବନ୍ଧରେ ପ୍ରମାଣ କରିବା ଅସମ୍ଭବ । ଏଣୁ ସର୍ବପ୍ରଥମେ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ରଚିତ 'ବାର୍ହସ୍ପତ୍ୟ ସୂତ୍ର'ରେ ଭାରତ ବର୍ଷର ବହୁ ପବିତ୍ର ବୈଷ୍ଣବ





କ୍ଷେତ୍ର ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରର ଉଲ୍ଲେଖ ଅଛି ।(୭) ସପ୍ତମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲିଖିତ 'କୈଲାନ', ତାମ୍ର ଲେଖାରୁ ଜଣାଯାଏ ସମତଟର ରାଜା ପରମ ବୈଷ୍ଣବ ଶ୍ରୀଧାରଣରାଟ, ପୁରୁଷୋତ୍ତମ ଦେବତାଙ୍କୁ ସୃଷ୍ଟି, ସ୍ଥିତି, ପ୍ରଳୟକର୍ତ୍ତା ଭାବରେ ସ୍ତୁତି କରିଛନ୍ତି । ଏହି ସମୟରେ ପୁରୁଷୋତ୍ତମ ଭାବରେ ବିଷ୍ଣୁଙ୍କର ଉପାସନା କେବଳ ଉତ୍କଳରେ ପ୍ରଚଳିତ ଥିବାରୁ ଏହି ପୁରୁଷୋତ୍ତମ ଦେବତା ପୁରୀର ଜଗନ୍ନାଥ ବୋଲି ଦୀନେଶ ଚନ୍ଦ୍ର ସରକାର ମତ ଦେଇଛନ୍ତି ।(୮) ଅଷ୍ଟମ ଶତାବ୍ଦୀରେ ଭୌମବଂଶୀୟ ରାଜା ଶୁଭାକର ଦେବ(ପ୍ରଥମ)ଙ୍କର ନେଉଳପୁର ତାମ୍ରଲେଖରେ ଚାରି ଥର ପୁରୁଷୋତ୍ତମ, ତିନିଥର ବଳଭଦ୍ର ଓ ଥରେ ମାତ୍ର ହଳଧର ଶବ୍ଦ ବ୍ୟବହୃତ ହୋଇଥିବା ସୂଚୀତ ହୁଏ । ଏଗୁଡ଼ିକ ଦାତାମାନଙ୍କର ନାମ ତାଲିକାରେ ଅନ୍ତର୍ଭୁକ୍ତ । ଏହିସବୁ ଶବ୍ଦର ଉଲ୍ଲେଖରୁ ଡଃ କାହ୍ନୁଚରଣ ମିଶ୍ର ଅନୁମାନ କରିଛନ୍ତି ଯେ ସେହି ସମୟ ବେଳକୁ ଏ ଅଞ୍ଚଳରେ ପୁରୁଷୋତ୍ତମ ଓ ବଳଭଦ୍ର ଉପାସ୍ୟ ଦେବତା ଥିଲେ ।

ତେଣୁ ଲୋକମାନେ ପୁଅମାନଙ୍କ ନାମ ପୁରୁଷୋତ୍ତମ ଓ ବଳଭଦ୍ର, ହଳଧର ଆଦି ନାମକରଣ କରିବାରେ ଆଗ୍ରହୀ ଥିଲେ ଏବଂ ସେହି ସମୟବେଳକୁ ସମୁଦ୍ର କୂଳର ପବିତ୍ର ପୀଠରେ ଜଗନ୍ନାଥ, ବଳଭଦ୍ର ଆଦି ପ୍ରତିଷ୍ଠିତ ହୋଇ ସାରିଥିବେ ।(୯) ଇନ୍ଦ୍ରଭୂତି (ଅଷ୍ଟମ ଶତାବ୍ଦୀ)ଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ଉଲ୍ଲେଖ ଅଛି -

ପ୍ରଣିପତ୍ୟ ଜଗନ୍ନାଥ ସର୍ବଜିନ ବରାର୍ଚ୍ଚିତମ୍
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପୀନଂ ଗଗନୋପମମ୍ ।

ଏହି ସ୍ତୁତି ମଧ୍ୟରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ବୋଲି କୁହାଯାଇଛି । ମାତ୍ର ଜଗନ୍ନାଥ ଶବ୍ଦ ଏଠାରେ ବୁଦ୍ଧଙ୍କର ବିଶେଷଣ ରୂପେ ବ୍ୟବହୃତ ହୋଇଛି । ଏଭଳି ତଥ୍ୟଟି ବିବଦମାନ ହୋଇ ରହିଥିଲେ ମଧ୍ୟ ଲେଖକ ଉତ୍କଳୀୟ ଥିବାରୁ ଏଠାରେ ଉତ୍କଳର ଦେବତା ଶ୍ରୀଜଗନ୍ନାଥଙ୍କୁ ଲକ୍ଷ୍ୟ କରି ସ୍ତୁତି କରିଥିବା ସମ୍ଭବ । ଅଧିକ ସିଦ୍ଧି ବ୍ୟାପୀନଂ, ଗଗନୋପମମ୍ ପଦମାନଙ୍କରେ ଜଗନ୍ନାଥଙ୍କର ପୁରୁଷୋତ୍ତମତ୍ୱ ସୂଚୀତ ହେଉଛି ।

ମୁରାରୀ ମିଶ୍ରଙ୍କର ସଂସ୍କୃତ ନାଟକ 'ଅନର୍ଘରାଘବ' (ନବମ ଶତାବ୍ଦୀ)ର ପ୍ରସ୍ତାବନା ଅଂଶରେ ପୁରୁଷୋତ୍ତମ ଜଗନ୍ନାଥଙ୍କପ୍ରତି ଭକ୍ତି ଅର୍ପଣ କରାଯାଇଛି ।(୧୦) ଏହି ନାଟକ ରଥଯାତ୍ରାବେଳେ ଶ୍ରୀଜଗନ୍ନାଥଙ୍କୁ ଉତ୍ସର୍ଗୀକୃତ ହୋଇଥିଲା ଓ ସର୍ବପ୍ରଥମେ ପୁରୁଷୋତ୍ତମ କ୍ଷେତ୍ରରେ ଅଭିନୀତ ହୋଇଥିଲା । ଏଥିରୁ ମନେହୁଏ ଜଗନ୍ନାଥଙ୍କ ରଥଯାତ୍ରା ଏହି ସମୟ ବେଳକୁ ପ୍ରସିଦ୍ଧିଲାଭ କରିସାରିଥିଲା ।

**ସହାୟକ ଗ୍ରନ୍ଥସୂଚୀ**


୧. ଋଗବେଦ - ପୁରୁଷ-ସୂକ୍ତ

୨. ଋଗ୍‌ବେଦ - ୧୦/୧୫୫/୩

୩. ଉପନିଷଦ - ଶାନ୍ତି ମନ୍ତ୍ର

୪. କୈବଲ୍ୟୋପନିଷଦ, ମନ୍ତ୍ର-୨୧

୫. ଭଗବତ୍ ଗୀତା ୧୫/୧୮

୬. ଭାରତୀୟ ସଂସ୍କୃତିକୋ ଉତ୍କଳକୀ ଦେନ - ପଣ୍ଡିତ ନୀଳକଣ୍ଠ ଦାସ, ପୃ.୨୨୮, ରାଷ୍ଟ୍ରଭାଷୀ ଜୟନ୍ତୀ ଗ୍ରନ୍ଥ

୭. ବାର୍ହସ୍ପତ୍ୟ ସୂତ୍ରମ୍ - ୩/୨୦/୧୧୯-୧୨୦

୮. ଆଇ.ଏଚ୍.ଓ., ସଂଖ୍ୟା-XXIII-11

୯. The Cult of Jagannath, Dr. K.Ch. Mishra, p.36

୧୦. ଅନର୍ଘରାଘବ ନାଟକ - ପ୍ରସ୍ତାବନା - ମୁରାରୀ ମିଶ୍ର



ଶ୍ରୀ ଆଶ୍ରମ
ଦୋଳଗୋବିନ୍ଦପୁର
ବୀରପ୍ରତାପପୁର, ପୁରୀ-୧୨








# ଶ୍ରୀଜଗନ୍ନାଥ ସଂସ୍କୃତି



ରବୀନ୍ଦ୍ର କୁମାର ବେହୁରିଆ

ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତି ଗଙ୍ଗମାନଙ୍କର ଏକା ଓଡ଼ିଶାକୁ ନୁହେଁ, ସମଗ୍ର ଭାରତକୁ ଏକ ସୁବିପୁଳ ଅବଦାନ । ଶ୍ରୀଜଗନ୍ନାଥ, ଭାରତୀୟ ସଂସ୍କୃତିର ଇତିହାସରେ ଆଜିସୁଦ୍ଧା ଏକ ଅନୁଦ୍‌ଘାଟିତ ରହସ୍ୟ ହୋଇ ରହିଅଛନ୍ତି । ଶ୍ରୀଜଗନ୍ନାଥ ସମଗ୍ର ଭାରତରେ ହିନ୍ଦୁ ସମାଜର କେବଳ ପରମାରାଧ୍ୟ 'ଜଗନ୍ନାଥ' ନୁହନ୍ତି, ସେ ପୁଣି ଓଡ଼ିଆ ଜାତିର ଇଷ୍ଟଦେବ । ଜନମାନସରେ ଜଗନ୍ନାଥ ଧର୍ମ ଓ ସଂସ୍କୃତି ଯେପରି ଭାବେ ପ୍ରତିଭାତ ହୋଇଛି, ତାହା ଅନନ୍ୟ ସାଧାରଣ । ସମଗ୍ର ବିଶ୍ୱରେ ଏ ପ୍ରକାର ସଂସ୍କୃତି ତଥା ଧର୍ମର ପଟ୍ଟାନ୍ତର ନାହିଁ । ବୈଦେଶିକ ଆକ୍ରମଣ ଓ ପୀଡ଼ନରେ ଓଡ଼ିଆ ଜାତି ଯେତେବେଳେ ନିପୀଡ଼ିତ ହୋଇଛି, ଶ୍ରୀଜଗନ୍ନାଥ ଓଡ଼ିଆ ଜାତି ସହିତ ସମଦଶାଭୋଗୀ ହୋଇ କମ୍ ନିର୍ଯ୍ୟାତିତ ଓ ନିପୀଡ଼ିତ ହୋଇ ନାହାନ୍ତି । କିମ୍ବଦନ୍ତୀ ରକ୍ତବାହୁ ଉତ୍କଳ ଆକ୍ରମଣ କଲାବେଳେ ଶ୍ରୀଜଗନ୍ନାଥ ମଧ୍ୟ ଆତ୍ମଗୋପନ କରିଅଛନ୍ତି । ପୁଣି କାଞ୍ଚି ଅଭିଯାନରେ ଶ୍ରୀଜଗନ୍ନାଥ ଓ ବଳଭଦ୍ର କଳା ଓ ଧଳା ଘୋଡ଼ାରେ ଚଢ଼ି ସାଧାରଣ ସୈନିକ ପରି ମଧ୍ୟ ବାହାରି ପଡ଼ିଛନ୍ତି । ମାଣିକ ଗଉଡୁଣୀର ସାମାନ୍ୟ ଦଧିରେ ତାଙ୍କୁ ତୃଷା ନିବାରଣ କରିବା ପାଇଁ ପଡ଼ିଛି । କିମ୍ବଦନ୍ତୀରେ ଇତିହାସରେ ପୁଣି ସଂସ୍କୃତି ଓ ପରମ୍ପରାରେ ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ପରମ ଆତ୍ମୀୟ । ବିଦେଶରେ ଓଡ଼ିଶାର ପରିଚୟ ପୁଣି ଜଗନ୍ନାଥ । ଜଗନ୍ନାଥଙ୍କର ଅନ୍ୟନାମ ପୁରୁଷୋତ୍ତମ ଓ ଶ୍ରୀକ୍ଷେତ୍ର ପୁରୀ ପୁରୁଷୋତ୍ତମ କ୍ଷେତ୍ର ନାମରେ ବିଦିତ ।

ନିର୍ମାଣ ରୀତି ଓ ଶିଳ୍ପକଳା ଦୃଷ୍ଟିରୁ ଶ୍ରୀଜଗନ୍ନାଥ ପ୍ରାକ୍-ବୈଦିକ ଓ ଦ୍ରାବିଡ଼-ଉତ୍ପତ୍ତି ବୋଲି ସୂଚିତ ହୁଅନ୍ତି । ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଦାରୁ ବା କାଷ୍ଠ ନିର୍ମିତ । ଇଏ ହେଉଛନ୍ତି ସେହି ଜଗନ୍ନାଥ ଯାହାଙ୍କୁ ଶବରମାନେ ଦାରୁଦେବତା ରୂପେ ପୂଜା କରିଛନ୍ତି । ଶାକ୍ତମାନେ ଶକ୍ତି, ଶୈବମାନେ ଭୈରବ, ବୌଦ୍ଧମାନେ ବୁଦ୍ଧ ଓ ଜୈନମାନେ ଋଷଭଦେବ ରୂପେ ପରିକଳ୍ପନା କରିଛନ୍ତି । ଏବେ ମଧ୍ୟ ବୈଷ୍ଣବ, ଶୈବ, ଶାକ୍ତ ଇତ୍ୟାଦି ବିଭିନ୍ନ ମତବାଦର ପୂଜାବିଧି ଶ୍ରୀମନ୍ଦିରରେ ପ୍ରଚଳିତ । ସ୍ନାନଯାତ୍ରାଠାରୁ ବାହୁଡ଼ା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କ ପ୍ରଧାନ ପୂଜକ ଦଇତା ପତି ନାମରେ ନାମିତ । ବିଭିନ୍ନ ଧର୍ମ, ଦର୍ଶନ, ସଂସ୍କୃତି ତଥା ଆଚରଣକୁ ଧାରଣ କରି ଶ୍ରୀଜଗନ୍ନାଥ ଧର୍ମ ତଥା ସଂସ୍କୃତି ଏକ ଚିରନ୍ତନ ସମନ୍ୱୟର ପ୍ରତୀକ । ମାତ୍ର ଜଗନ୍ନାଥ ବୈଦିକ ପୁରୁଷୋତ୍ତମ ହୁଅନ୍ତୁ ବା ଶବର ସେବିତ କୌଣସି 'ବନଦେବତା' ହୁଅନ୍ତୁ, ବିଶ୍ୱାବସୁଙ୍କଠାରୁ ଆରମ୍ଭ କରି ଶ୍ରୀଚୈତନ୍ୟଙ୍କ ପର୍ଯ୍ୟନ୍ତ ଭାରତର ନାନା ଧର୍ମ ଧାରାର ସମନ୍ୱୟ ତାଙ୍କଠାରେ ରହିଅଛି । 'ଶୂନ୍ୟ ସଂହିତା'ରେ ସନ୍ଥ ଅଚ୍ୟୁତାନନ୍ଦ କହିଛନ୍ତି - 'ପ୍ରଭୁ ଜଗନ୍ନାଥଙ୍କ ମଧ୍ୟରେ ସମସ୍ତ ଅବତାର ପୁରୁଷ ଲୀନ ହୋଇଯାଇଛନ୍ତି । ସ୍ୱୟଂ ଈଶ୍ୱର ଲୀନ କରିବାପାଇଁ ଏଠାରେ ରତ୍ନ ସିଂହାସନରେ ବିରାଜମାନ କରିଛନ୍ତି । ସାରଳା ମହାଭାରତର 'ବନ ପର୍ବ'ରେ ଶ୍ରୀଜଗନ୍ନାଥ ସଂପର୍କରେ ଲେଖାଯାଇଛି -

'ନାସା, କର୍ଣ୍ଣ ଶ୍ରବଣ ଯେ ନୟନ ଦିଶି
ଦେଖି ଇନ୍ଦ୍ରଦ୍ୟୁମ୍ନ ମହା ବିସ୍ମୟରେ ବସି
ମହାବୌଦ୍ଧ ବିକାଶ ହୋଇବା ତିନି ରେଖା
କର ଚରଣ ପଲ୍ଲବ ନ ଦିଶୟ ଶିଖା ।'

ତାନ୍ତ୍ରିକ ଇନ୍ଦ୍ରଭୂତି ଶ୍ରୀଜଗନ୍ନାଥଙ୍କୁ 'ସର୍ବଜୀନ ବରାର୍ଚ୍ଚିତ' ରୂପେ କଳ୍ପନା କରିଅଛନ୍ତି । ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏକ ପାତ୍ରରୁ ଏକତ୍ର ବସି ମହାପ୍ରସାଦ ସେବନ କରିବା ଏକ ସ୍ୱଷ୍ଟ ତାନ୍ତ୍ରିକ ଆଚାର ବୋଲି ଅନେକ ଅନୁମାନ କରିଥାନ୍ତି । ଏଠାରେ ଜାତି ଭେଦର ବିଚାର ନାହିଁ । ପୂଜାବିଧି ଅନୁସାରେ ଜଗନ୍ନାଥଙ୍କଠାରେ ନିବେଦିତ ପ୍ରସାଦ ବିମଳାଙ୍କଠାରେ ଅର୍ପିତ ନହେବା ପର୍ଯ୍ୟନ୍ତ ତାହା ମହାପ୍ରସାଦ ରୂପେ ଗଣ୍ୟ ହୁଏ ନାହିଁ । ତାନ୍ତ୍ରିକମାନେ ଜଗନ୍ନାଥଙ୍କୁ ସାକ୍ଷାତ ଦକ୍ଷିଣ କାଳିକାରୂପେ କଳ୍ପନା କରିଥାନ୍ତି । ସେଥିପାଇଁ ତନ୍ତ୍ରୋକ୍ତ ପଞ୍ଚମକାର ରୀତିରେ ପୂଜା ମଧ୍ୟ ଜଗନ୍ନାଥ ପୂଜାର ଅନ୍ତର୍ଗତ ।

ଜଗନ୍ନାଥ ସକଳ ଶକ୍ତିର ଉତ୍ସ, ସକଳ ସର୍ଜନାର ମୂଳ । ଅନାଥର ନାଥ ଜଗତର ଗତି ଜଗନ୍ନାଥ । ସେ ହିଁ ରାମ ସେ ହିଁ ରମା । ସେ ହିଁ





ଶ୍ୟାମ ସେ ହିଁ ଶ୍ୟାମା । ସେ ହିଁ କାଳ ସେ ହିଁ କାଳୀ । ସେ ହିଁ ଶିବ ସେ ହିଁ ଶିବା । ସେ ହିଁ ରୁଦ୍ର ସେ ହିଁ ରୁଦ୍ରାଣୀ । ସେ ହିଁ ପ୍ରକୃତି ଓ ପୁରୁଷୋତ୍ତମ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଆଉ ସୁଦର୍ଶନ ଚକ୍ର । ଚକ୍ର ହିଁ ସବୁଧର୍ମର ପ୍ରତୀକ । ଏହାର ଆକାର, ମଣ୍ଡଳର ଆକାର ପରି ଅଖଣ୍ଡ । ଅଖଣ୍ଡ ମଣ୍ଡଳାକାରଂ । ଯାହାର ଆରମ୍ଭ କି ଶେଷ ନାହିଁ । ବହୁ ଦାର୍ଶନିକ ତତ୍ତ୍ୱ ସମ୍ବଳିତ ମହାପ୍ରଭୁ କେତେବେଳେ ବୈଷ୍ଣବ, କେତେବେଳେ ରୁଦ୍ର, କେତେବେଳେ ଶାକ୍ତ କେତେବେଳେ ସୌର, କେତେବେଳେ ଗାଣପତ୍ୟ, ତାହାର ମୂଲ୍ୟାଙ୍କନ କରିବା ଯଦିଓ କଷ୍ଟ ତଥାପି ହିନ୍ଦୁ ଦର୍ଶନରେ ତାଙ୍କୁ ପଞ୍ଚଦେବତା ଭାବେ ପରିକଳ୍ପନା କରାଯାଇଛି ।

ଆର୍ଯ୍ୟଭୂମି-ବେଦଭୂମି-ଦେବଭୂମି, ଆର୍ଯ୍ୟାବର୍ତ୍ତ ପବିତ୍ର ଭାରତବର୍ଷ । ଭାରତ ସରସୀରେ ଉତ୍ତ୍ରଦେଶ ପବିତ୍ର କମଳ, ଯାହାର ଦିବ୍ୟ କେଶର ହେଉଛି ପୁଣ୍ୟ ନୀଳାଚଳ ଧାମ ।

'ଭାରତ ସରସେ ଉତ୍କଳ କମଳ
ତା' ମଧେ କେଶର ପୁଣ୍ୟ ନୀଳାଚଳ ।'

ନଦ-ନଦୀ-ବଣ-ପ୍ରାନ୍ତର-କାନ୍ତର-କନ୍ଦର ଘେରା ପ୍ରକୃତି ରାଣୀର ଚାରୁ ଗନ୍ତାଘର ଉତ୍‌କଳ ଭୂମିରେ ବିରାଜିତ ଜଗତର ନାଥ ସ୍ୱୟଂ ଜଗନ୍ନାଥ । ଏହା ଶଙ୍ଖକ୍ଷେତ୍ର (ସ୍କନ୍ଦ ପୁରାଣ ମତରେ), ପୁରୁଷୋତ୍ତମ କ୍ଷେତ୍ର, ଭୌମ କ୍ଷେତ୍ର ଓ ଦିବ୍ୟକ୍ଷେତ୍ର ରୂପେ ଚିହ୍ନିତ ।

ଗଭୀର ମାନବ ପ୍ରେମ ହିଁ ଶ୍ରୀଜଗନ୍ନାଥ ସଂସ୍କୃତିର ମୂଳମନ୍ତ୍ର । ମାନବ ସେବା ହିଁ ମାଧବ ସେବା । ସମସ୍ତ ବିଭେଦକୁ ମୂଳପୋଛ କରି ଜୀବନରେ ସମଗ୍ର ମାନବ ଜାତିକୁ ଆଲିଙ୍ଗନ କରିବାର ମନ୍ତ୍ର କେବଳ ଶିକ୍ଷା ଦେଇଛି ନୀଳାଚଳ କ୍ଷେତ୍ର ଆଉ ଶ୍ରୀଜଗନ୍ନାଥ ସଂସ୍କୃତି । ଯାହା କୁହାଯାଇଛି - 'ସକଳ ତୀର୍ଥ ତୋ ଶ୍ରୀଚରଣେ ।' ଈଶ୍ୱର ଯେଉଁ ରୂପରେ ଯେଉଁ ଦାର୍ଶନିକ ପଟ୍ଟଭୂମିରେ ଖୋଜିଲେ ସେ କେବଳ ପୂର୍ଣ୍ଣରୂପେ ଉପଲବ୍ଧ ହୋଇପାରିବେ ଶ୍ରୀଜଗନ୍ନାଥ ବିଗ୍ରହରେ । ଗୀତାରେ କୁହାଯାଇଛି - 'ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।'

ପଞ୍ଚସଖା ଶ୍ରୀଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ, ପରମ ବ୍ରହ୍ମ ବା ସୃଷ୍ଟିକର୍ତ୍ତା ଭାବରେ ଦେଖିଛନ୍ତି ଓ ତହିଁରୁ ଯଥାକ୍ରମେ ବିନ୍ଦୁ, ବ୍ରହ୍ମ, ଶବ୍ଦବ୍ରହ୍ମ ଓ ନାମବ୍ରହ୍ମଙ୍କର ସୃଷ୍ଟି ହୋଇଛି ବୋଲି କହିଛନ୍ତି । ଏମାନେ ସମସ୍ତେ କହିଛନ୍ତି ଓଁକାର ବା ଏକାକ୍ଷର ହେଉଛନ୍ତି ସାକ୍ଷାତ୍ ପରଂବ୍ରହ୍ମ, ନିରଞ୍ଜନ ଓ ତାଙ୍କର ପ୍ରକାଶ ରୂପ ଅଟନ୍ତି ଶ୍ରୀଜଗନ୍ନାଥ । ସେ ସକଳ ଆଲୋଚନା ଓ ସମାଲୋଚନାର ଊର୍ଦ୍ଧ୍ୱରେ । ଏ ଜାତିର ଇତିହାସ, ହସ-କାନ୍ଦ, ଲହୁ-ଲୁହ, ଭାବ-ଭାବାନ୍ତର, ଅଭାବ-ଅନଟନ, ଦୁଷ୍କୃତି-ଦୁର୍ଗତି, ଉତ୍ଥାନ-ପତନରେ ସେ ଅଙ୍ଗାଅଙ୍ଗୀଭାବେ ଜଡ଼ିତ । ତାଙ୍କର ବାହୁ ଛାୟାତଳେ ଏହି କ୍ରମବର୍ଦ୍ଧିଷ୍ଣୁ ଓଡ଼ିଆ ଜାତି ଚିରଦିନ ରହିଆସିଛି । ସେ ଜାତି-ଧର୍ମ-ବର୍ଣ୍ଣର ପ୍ରାଚୀର ଭାଙ୍ଗି ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ପତିତପାବନ ସାଜିଛନ୍ତି । ତାଙ୍କ ପାଖକୁ ବୁଦ୍ଧ, ଜୈନ, ମୁସଲମାନ, ଖ୍ରୀଷ୍ଟିଆନ, ଗାଣପତ୍ୟ, ଶୈବ, ଶାକ୍ତ, ବୈଷ୍ଣବ ଇତ୍ୟାଦି ସବୁ ଧର୍ମ ଓ ମତବାଦର ସିଦ୍ଧ ସାଧକ ଓ ମନିଷୀମାନେ ନିଜ ନିଜର ଧର୍ମ ଧ୍ୱଜା ଧରି ଆସିଛନ୍ତି ଏବଂ ସେମାନଙ୍କର ସବୁ ମତ ସେଠାରେ ବିଲୀନ ହୋଇଯାଇଛି । ନାନକ, କବୀର, ମାଧବାଚାର୍ଯ୍ୟ, ବଲ୍ଲଭାଚାର୍ଯ୍ୟ, ଶଙ୍କରାଚାର୍ଯ୍ୟ, ରାମାନୁଜ, ରାମାନନ୍ଦ, ବିଷ୍ଣୁ ସ୍ୱାମୀ, ଚୈତନ୍ୟ ପ୍ରଭୃତି ସାଧକମାନଙ୍କୁ ସେ ଆପଣାର କରିଛନ୍ତି । ତେଣୁ ଶ୍ରୀଜଗନ୍ନାଥ ହିଁ ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ଦେବତା ଯାହାଙ୍କଠାରୁ ସମାଜବାଦୀ ଚିନ୍ତା ଚେତନାର ଅୟମାରମ୍ଭ ହୋଇଛି । 'ବସୁଧୈବ କୁଟୁମ୍ବକମ୍' ନୀତିରେ ସେ ସମସ୍ତଙ୍କୁ ବାନ୍ଧି ରଖିଛନ୍ତି । ଏହା ହେଉଛି ଜଗନ୍ନାଥ ଧର୍ମର ଧାରା ଓ ବିଶ୍ୱ ସଂସ୍କୃତିକୁ ଜଗନ୍ନାଥ ସଂସ୍କୃତିର ଅବିସ୍ମରଣୀୟ ଅବଦାନ ।

ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତି ଭାରତୀୟ ଧର୍ମ ଓ ସଂସ୍କୃତିର ଏକ ବୈଚିତ୍ର୍ୟପୂର୍ଣ୍ଣ ବିରାଟ ପିରାମିଡ଼ । ହଜାର ହଜାର ବର୍ଷ ତଳର କେତେ ଅମୂଲ୍ୟ ରତ୍ନ ତା' ଭିତରେ ରହିଛି ଗୁପ୍ତ ଭାବରେ ତାହା କହିହେବ ନାହିଁ । ଯାତ୍ରା, ପର୍ବ, ଶୋଭାଯାତ୍ରା, ମଣିଷର ଉତ୍ସବ ମୁଖରତା, ପ୍ରାଣ ପ୍ରଚୁରତା, ଇହକାଳ ପରକାଳ, ସ୍ୱପ୍ନ, କଳ୍ପନା, ଭୋଗ, ଯୋଗ, ଭୟ, ଉତ୍ସାହ, ନିର୍ଭୀକତା, ପ୍ରାଣ ପୁଲକତା-ସବୁ ଠୁଳ ହୋଇଛି ଏଇ ଜଗନ୍ନାଥ ସଂସ୍କୃତିରେ । ଜଗତର ମଙ୍ଗଳ, ସତ୍ୟ, ଶିବ, ସୁନ୍ଦର, ସତ୍, ଚିତ୍, ଆନନ୍ଦ, ସମର୍ପଣ ଭାବରେ ରାଧାକୃଷ୍ଣ ଭାବ, ସତ୍ୟ ଭକ୍ତି ଆଦର୍ଶରେ ରାମ ଭାବ, ଶକ୍ତି ଜ୍ୟୋତି ଭାବରେ ମାତୃଶକ୍ତିର ଭାବ ଜଗନ୍ନାଥଙ୍କ ଲୀଳାରେ, ପୂଜାରେ ଓ ପରମ୍ପରାରେ ଫୁଟି ଉଠିଛି । ରାଜନୀତି, ସମାଜନୀତିରେ ଗଣପ୍ରେମ ଓ ଐକଭାବ, ଅର୍ଥ ଓ କାମନାରେ ତ୍ୟାଗ ଭାବ, ମୋକ୍ଷ ପାଇଁ ଭକ୍ତିଭାବ ଏବଂ ଏସବୁ ଭାବ ଉଦ୍ରେକ ପାଇଁ ଜଗନ୍ନାଥଙ୍କ ଷୋଳକଳା, ସଂସ୍କୃତି, ସଂଗୀତ, ନୃତ୍ୟ ଯାତ୍ରା ପ୍ରାଣ ଓ ପୁଲକିତ କରି ମାନବ ସଭ୍ୟତାକୁ ଅପୂର୍ବ ଭାବରେ ପୂର୍ଣ୍ଣାଙ୍ଗ, ସୁଖମୟ, ଶାନ୍ତିମୟ କରି ସୁନ୍ଦରତାରେ ଭରି ଦେଇଛି । ଶ୍ରୀଜଗନ୍ନାଥ ସଂସ୍କୃତିରେ ଆର୍ଯ୍ୟ ଆଦିବାସୀ ଓ ଦ୍ରାବିଡ଼ ଧର୍ମ ସଂସ୍କୃତିର ଯେଉଁ ମଧୁର ସମନ୍ୱୟ ଦେଖିବାକୁ ମିଳେ ବାସ୍ତବିକ ତାହା ଏକ ମହାନ୍ ଅଖଣ୍ଡ ଭାରତୀୟ ଚେତନାର ପ୍ରକାଶ ମାତ୍ର । ଶ୍ରୀଜଗନ୍ନାଥ ଧର୍ମ ଓ ଶ୍ରୀଜଗନ୍ନାଥ ଚେତନା ଏକ ବିରାଟ ଜାତିଗତ ଧର୍ମ ଚେତନା । ଶାବର, ଶୈବ, ବୈଷ୍ଣବ, ଶାକ୍ତ, ଗାଣପତ୍ୟ ଇତ୍ୟାଦିର ସମନ୍ୱୟ ଶ୍ରୀଜଗନ୍ନାଥ ଧର୍ମରେ ସଂଗଠିତ ହୋଇଛି । ସେହିପରି ବିଭିନ୍ନ ଧର୍ମମତ ଯଥା- ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ, ରାମାନୁଜଙ୍କ ବିଶିଷ୍ଟାଦ୍ୱୈତ, ଚୈତନ୍ୟଙ୍କ ଅଚିନ୍ତ ଭେଦାଭାଦ ତତ୍ତ୍ୱ, ମାଧ୍ୱୋଙ୍କ ଦ୍ୱୈତ ଏବଂ ବଲ୍ଲଭାଚାର୍ଯ୍ୟଙ୍କ ଶୁଦ୍ଧାଦ୍ୱୈତ ଚିନ୍ତାଧାରାର ମହାମିଳନ ଘଟିଛି - ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିରେ ।

ଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ସଂପ୍ରଦାୟ ବା ମତବାଦର ଦେବତା ନୁହନ୍ତି । ମୈତ୍ରୀ ଓ ସମନ୍ୱୟ ସାଧନାର ବିଶ୍ୱରୂପ-ଜଗନ୍ନାଥ । ମନୁଷ୍ୟର ଆଧ୍ୟାତ୍ମିକ ସାଧନାରେ ଶ୍ରୀଜଗନ୍ନାଥଙ୍କ ପରି ଏକ ପରିକଳ୍ପନା ଓ ଅନୁଷ୍ଠାନ





ବିଶ୍ୱରେ ଅଦ୍ୱିତୀୟ । ଜଗନ୍ନାଥଙ୍କୁ କେନ୍ଦ୍ର କରି ଉତ୍କଳର ଯେଉଁ ସମାଜ ଶାସନାଦର୍ଶର ବିକାଶ ହୋଇଛି, ବିଶ୍ୱ ସଭ୍ୟତାରେ ତାହାର ପଟାନ୍ତର ନାହିଁ । ସେ ଅବ୍ୟକ୍ତ, ଅଚିନ୍ତ୍ୟ, ବିରାଟ ପୁରୁଷ ଆହୁରି ମଧ ଅଚଳ, ଅଟଳ, ଅନନ୍ତ, ଅସୀମ ମହାମେରୁ ମହୋଦଧି । ସେ ହେଉଛନ୍ତି ଶାନ୍ତି, ମୈତ୍ରୀ, ପ୍ରୀତି, ଦୟା, କ୍ଷମା ଓ କରୁଣାର ଏକ ମଧୁର ସମନ୍ୱୟ, ମାନବବାଦର ସର୍ବଶ୍ରେଷ୍ଠ ପ୍ରବକ୍ତା । ଶ୍ରୀଜଗନ୍ନାଥ କେବଳ ଉତ୍କଳର ନୁହନ୍ତି - ମାନବ ସଭ୍ୟତା ଓ ସମାଜର ଏକ ପରମ ସଂପଦ ।

**ସହାୟକ ଗ୍ରନ୍ଥସୂଚୀ**


୧. ସୁରେନ୍ଦ୍ର ମହାନ୍ତି - ଉତ୍କଳ ଯୁଗେ ଯୁଗେ, ଫ୍ରେଣ୍ଡସ୍, କଟକ, ୨୦୦୧, ପୃ.୩୬-୪୫

୨. ଗୁରୁକଲ୍ୟାଣ ମହାପାତ୍ର - ସଂପାଦନା, ଉତ୍କଳ ପ୍ରସଙ୍ଗ, ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର, ଜୁଲାଇ-୨୦୦୩

୩. ସୁରେନ୍ଦ୍ର ନାଥ ଦାଶ - ସଂପାଦନା, ଶ୍ରୀଜଗନ୍ନାଥ, ଶ୍ରୀଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ, ଅକ୍ଟୋବର, ଭୁବନେଶ୍ୱର- ଡିସେମ୍ବର ପୂଜା ବିଶେଷାଙ୍କ, ୧୯୯୮



ଗ୍ରନ୍ଥାଗାର ଓ ସୂଚନା ବିଜ୍ଞାନ ବିଭାଗ
ଚାନ୍ଦବାଲି କଲେଜ
ଭଦ୍ରକ-୭୫୬୧୩୩


# ଅଭୀପ୍ସା

ବ୍ରହ୍ମୋତ୍ରୀ ମହାନ୍ତି

ତମେ ଦି' ଆଖିରେ ପ୍ରଭୋ ! ଯେତେ କଥା କୁହ
ସେ କଥାରୁ କାଣିଚାଏ ଯଦି ପାରୁଥାନ୍ତି ବୁଝି
ତେବେ ତୁମ ଦରଶନ କ'ଣ ବୃଥା ଯାଉଥାନ୍ତା ?
ଲୋଡ଼ା ପଡୁ ନଥାନ୍ତା ମୋ' ଅଧ୍ୟୟନ ଗୀତା,
ଭାଗବତ, ବେଦ ଓ ବେଦାନ୍ତ ।

ମାତ୍ର ପ୍ରଭୋ ! ଦୃଷ୍ଟି ମୋର ଆହରଣ ପାରେ ନାହିଁ କରି
ତୁମରି ଦୃଷ୍ଟିର ସେଇ ରତ୍ନରାଜି ମହାର୍ଘ ସଂପଦ,
ତେଣୁ ତୁମ ପାଖେ ଯାଇ ମଧ ଚିନ୍ତାରେ ଦରିଦ୍ର
ଏବଂ ଭାବେ ମୁଁ ଦରିଦ୍ର,
କ୍ଳାନ୍ତି ଆଉ ଅବସାଦ ଅହରହ ମୋତେ ଘେରି ରହେ ।

ତା' ବୋଲି କି ତୁମ ପାଖେ ଯିବା ମୋର ବନ୍ଦ ହେବ କେବେ,
ମନ ତଟେ ଯେତେ ଗ୍ଲାନି ଥାଉ,
ତୁମର ନୀରବ ବକ୍ତବ୍ୟ ପଛେ ବୁଝି ନାହିଁ ପାରେ,
ତଥାପି ମୁଁ ଯିବି ତୁମ ପାଖେ,
ଆବେଗେ ନ ଆଲୋଡ଼ିତ ହେଉ ପଛେ ମନ ତବ,
ତୁମକୁ ମୁଁ ରହିବି ଅନାଇ,
ଅପଲକେ ରହିବି ଅନାଇ ।

ତୁମକୁ ମୁଁ ଭଲପାଏଁ, ସତରେ ମୁଁ ଭଲପାଏଁ,
ମନ ସିନା ପାରୁ ନାହିଁ ତୁମ ସଙ୍ଗେ ଯୋଖି
ମାତ୍ର ମୁଁ ନୟାନ୍ତ ହେବି ଯେବେ,
ନୀରବେ ପାରିବ କେବେ ରହି ତୁମେ ଦୂରେ ?
ଆଖିରେ ତୁମର, ମୋ ପାଇଁକି ଆସିବନି ଲୁହ ?
ଅସଂପୂର୍ଣ୍ଣ ଭୁଜ ତବ, ଅଥଚ ମୁଁ ଲୋଡ଼େ ପ୍ରଭୋ !
ତୁମଠାରୁ ପୂର୍ଣ୍ଣ ଆଲିଙ୍ଗନ,
ତୁମର ଚରଣ ନାହିଁ, ମାତ୍ର ମୁଁ ତୁମରି ପଦେ
ମଥା ରଖିବାକୁ ଚାହେଁ ସମଗ୍ର ଜୀବନ ।


ଲବଣିଖିଆ ଛକ
ପୁରୀ








# ବିଶ୍ୱର ଦେବତା ଶ୍ରୀଜଗନ୍ନାଥ

ଦେବାଶିଷ ଚକ୍ରବର୍ତ୍ତୀ

**ଶ୍ରୀ**ଜଗନ୍ନାଥ ହିଁ ଓଡ଼ିଶା ଓ ଓଡ଼ିଆର ସର୍ବଶ୍ରେଷ୍ଠ ପରିଚିତି । ତାଙ୍କ ବ୍ୟତିରେକ ଏ ଜାତିର ଅସ୍ତିତ୍ୱ କଳ୍ପନାତୀତ । ସେ କେବଳ ଆମର ଆଧାତ୍ମିକ ଦେବତା ନୁହନ୍ତି ବରଂ ସେ ସାଜିଛନ୍ତି ଏ ଜାତିର ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ଚେତନାର ପ୍ରତିଭୂ । ବାହ୍ୟ ଉପଚାରର ଆଡ଼ମ୍ବର ଅପେକ୍ଷା ଅକୃତ୍ରିମ ଭକ୍ତିକୁ ହିଁ ସେ ଚିରକାଳ ଶ୍ରେୟ ମଣିଥାନ୍ତି । ତେଣୁ ତାଙ୍କ ପ୍ରସାରିତ ବାହୁ ଯୁଗଳ ସକଳ ମତପନ୍ଥୀଙ୍କୁ ଅଭୟ ଆଶ୍ରୟ ଦେଇଆସିଛି । ତାଙ୍କ ମଧରେ ସମସ୍ତେ ନିଜ ନିଜର ଅଭୀଷ୍ଟଙ୍କୁ ଖୋଜିପାଇ ଉଲ୍ଲସିତ ହୋଇଛନ୍ତି । ସେ କେବଳ ହିନ୍ଦୁଧର୍ମର ବିବିଧ ସଂପ୍ରଦାୟ ଦ୍ୱାରା ଗୃହୀତ ହୋଇନାହାନ୍ତି, ବରଂ ବହୁ ବିଧର୍ମୀ ଦ୍ୱିଧାହୀନ ଭାବରେ ତାଙ୍କୁ ଆପଣେଇ ନେଇଛନ୍ତି । ତାଙ୍କ ମହିମା କେବଳ ଆମ ଦେଶରେ ସୀମିତ ହୋଇ ରହିନାହିଁ । ବିଭିନ୍ନ ଦେଶରେ ସେ ନିରାଜିତ ହେଉଛନ୍ତି । ରଥଚକର ଘର୍ଘର ସହିତ ଜୟ ଜଗନ୍ନାଥ ଧ୍ୱନିରେ ବିଭିନ୍ନ ଦେଶର ବହୁ ମହାନଗରୀର କୋଟି କୋଟି ଭକ୍ତଙ୍କ ପ୍ରାଣପୁର ଉଲ୍ଲସିତ ହୋଇଉଠୁଛି । କେବଳ ଶ୍ରୀମନ୍ଦିରର ରତ୍ନବେଦୀ ନୁହେଁ ନିଖିଳ ପ୍ରାଣର ହୃଦୟବେଦୀ ହିଁ ସାଜିଛି ତାଙ୍କର ନିବାସ ସ୍ଥଳ ।



ଶ୍ରୀଜଗନ୍ନାଥ ସ୍ଥାନ, କାଳର ପରିଧି ଅତିକ୍ରମ କରି ବହୁ ଭିନ୍ନ ଧର୍ମାବଲମ୍ବୀ ଭକ୍ତ ଓ ସାଧକଙ୍କୁ ଆକର୍ଷିତ କରି ଆସିଛନ୍ତି । ଖ୍ରୀଷ୍ଟଧର୍ମର ସଂସ୍ଥାପକ ଯୀଶୁଖ୍ରୀଷ୍ଟ ତାଙ୍କପ୍ରତି ଆକର୍ଷିତ ହୋଇ ଶ୍ରୀକ୍ଷେତ୍ରକୁ ଆସିଥିଲେ ବୋଲି ଆଲୋଚକମାନେ ମତ ଦିଅନ୍ତି । କିନ୍ତୁ ଦୁଇ ହଜାର ବର୍ଷ ତଳେ ସୁଦୂର ଜେରୁଜେଲମ୍‌ରୁ ଯୀଶୁଖ୍ରୀଷ୍ଟଙ୍କର ଶ୍ରୀକ୍ଷେତ୍ର ଆଗମନ ସଂପର୍କରେ ସନ୍ଦେହ ପ୍ରକାଶ ପାଇଥାଏ ।

ଭାରତୀୟ ଧର୍ମ ଚିନ୍ତନରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ଅଭେଦତ୍ୱ ଗୃହୀତ ହୋଇ ସାରିଛି । ଦ୍ୱାଦଶ ଶତାବ୍ଦୀର ପ୍ରଖ୍ୟାତ କୃଷ୍ଣଭକ୍ତ ନିମ୍ବାର୍କ ସ୍ୱାମୀ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପେ ଅଭିହିତ କରିଛନ୍ତି । ଶଙ୍କରାଚାର୍ଯ୍ୟ ମଧ ତାଙ୍କ ମଧରେ ପ୍ରତ୍ୟକ୍ଷ କରିଛନ୍ତି, ବଂଶୀ ବାଦନରତ କୃଷ୍ଣଚନ୍ଦ୍ରଙ୍କୁ । ଶ୍ରୀଜଗନ୍ନାଥ ମଧ ଶ୍ରୀକୃଷ୍ଣ ଭାବରେ 'ଓଁ କ୍ଳୀଂ କୃଷ୍ଣାୟ ଗୋପୀଜନ ବଲ୍ଲଭାୟ ନମଃ' ମନ୍ତ୍ରରେ ଆରାଧିତ ହେଉଛନ୍ତି । ଏହା ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀଜଗନ୍ନାଥଙ୍କୁ ସୂଚିତ କରୁଛି । ତେଣୁ କୃଷ୍ଣ ଚରିତ୍ର ସହିତ ଖ୍ରୀଷ୍ଟଙ୍କର ଅଦ୍ଭୁତ ସାମ୍ୟ ତାଙ୍କୁ ଶ୍ରୀଜଗନ୍ନାଥଙ୍କର ନିକଟତର କରୁ ନାହିଁକି ?

ସନ୍ଥ କବୀର ଓ ହରିଦାସଙ୍କ ପରି ମୁସଲମାନ ସାଧକମାନେ ଶ୍ରୀଜଗନ୍ନାଥଙ୍କ କୃପାଲାଭ କରିବାକୁ ଆକର୍ଷିତ ହୋଇ ଆସିଛନ୍ତି । ୧୫୧୨ ଖ୍ରୀଷ୍ଟାବ୍ଦରେ ସନ୍ଥ କବୀର ଶ୍ରୀକ୍ଷେତ୍ରକୁ ଆସିଥିଲେ । ତାଙ୍କର ଶ୍ରୀକ୍ଷେତ୍ର ରହଣୀର ସ୍ମାରକୀ ସ୍ୱରୂପ ପୁରୀ ସାଗର ବେଳାରେ ସ୍ୱର୍ଗଦ୍ୱାର ନିକଟରେ 'କବୀର ଚୌରା' ବିଦ୍ୟମାନ ଅଛି । ସେଠାରେ ସନ୍ଥ କବୀରଙ୍କର ଆଶାବାଡ଼ି ଓ କଠଉ ସଂରକ୍ଷିତ ହୋଇ ରହିଛି । କଥିତ ଅଛି ସେଠାରେ ସେ ଆଶାବାଡ଼ି ପୋତି ବାରମ୍ବାର କୂଳ ଲଂଘନ କରୁଥିବା ଅଶାନ୍ତ ସମୁଦ୍ରକୁ ନିୟନ୍ତ୍ରିତ କରିଥିଲେ । ଏଠାକୁ ଆସୁଥିବା ଦର୍ଶନାର୍ଥୀ ତଥା ଭକ୍ତମାନେ ପ୍ରସାଦ ସ୍ୱରୂପ 'ଟଙ୍କ ତୋରାଣି' ପାଇବା ସହିତ ଝାଡୁ ଦ୍ୱାରା ଆଶୀର୍ବାଦ ଲାଭ କରିଥାନ୍ତି । ସେ ଧର୍ମୀୟ ସଂକୀର୍ଣ୍ଣତାକୁ ପରିହାର କରି ମାନବତାର ଜୟଗାନ କରିଥିଲେ । ସନ୍ଥ କବୀର ନିର୍ଗୁଣ ବ୍ରହ୍ମର ଉପାସକ ହୋଇଥିଲେ ମଧ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ବ୍ୟାକୁଳ ହୋଇ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିବା ସହିତ 'ଠାକୁର ଭଲେ ବିରାଜୋ ଜୀ' ବୋଲି ପ୍ରକାଶ କରି ଶ୍ରୀଜଗନ୍ନାଥଙ୍କର ଅଭୟ ଆଶ୍ରୟ ଲୋଡ଼ିଥିଲେ ।

ସନ୍ଥ ହରିଦାସ ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହୋଇ ଶ୍ରୀକ୍ଷେତ୍ରରେ ତାଙ୍କର ଶେଷ ଜୀବନ ଅତିବାହିତ କରିଥିଲେ । ସେ ବାଂଲାଦେଶର ଯଶୋର ଜିଲ୍ଲାରେ ଏକ ମୁସଲମାନ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାପାଙ୍କ ନାମ ଥିଲା ହିଦାତୁଲ୍ଲା ଓ ମାତାଙ୍କର ନାମ ଲତିଫା ।





ସେମାନଙ୍କ ପୂର୍ବପୁରୁଷ ହିନ୍ଦୁଥିଲେ । ମାତ୍ର ମୁସଲମାନ ଶାସକଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ମୁସଲମାନ ଧର୍ମ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଶ୍ରୀଚୈତନ୍ୟ ନବଦ୍ୱୀପରେ ହରିନାମ ପ୍ରଚାର କରୁଥିବାବେଳେ ହରିଦାସଙ୍କ ସହିତ ସାକ୍ଷାତ ଘଟିଥିଲା । ସେ ତାଙ୍କପରି ଜଣେ ନିଷ୍ଠାପର ବୈଷ୍ଣବଙ୍କୁ ପାଇ ଆନନ୍ଦିତ ହେବା ସହିତ ତାଙ୍କୁ ନିଜର ସାଥୀ ଭାବରେ ଗ୍ରହଣ କରିଥିଲେ । ହରିଦାସ ଶ୍ରୀଚୈତନ୍ୟଙ୍କ ସହିତ ଶ୍ରୀକ୍ଷେତ୍ରକୁ ଆସି ଶେଷ ଜୀବନ ଅତିବାହିତ କରିଥିଲେ । ମୁସଲମାନ ହୋଇଥିବାରୁ ଶ୍ରୀମନ୍ଦିରରେ ପ୍ରବେଶ ଅଧିକାର ତାଙ୍କୁ ମିଳିନଥିଲା । ମାତ୍ର ଶ୍ରୀଚୈତନ୍ୟ ତାଙ୍କ ପାଇଁ ମହାପ୍ରସାଦ ସେବନର ବ୍ୟବସ୍ଥା କରିଥିଲେ । ହରିଦାସ କୃଷ୍ଣ ମିଶ୍ରଙ୍କର ପୁଷ୍ପ ବାଟିକାରେ ଅବସ୍ଥାନ କରୁଥିଲେ । ଶ୍ରୀଚୈତନ୍ୟ ତାଙ୍କୁ ନିୟମିତ ସାକ୍ଷାତ କରି ଶ୍ରୀଜଗନ୍ନାଥଙ୍କର ତୁଳସୀ ଓ ଧଣ୍ଡା ପ୍ରଦାନ କରୁଥିଲେ । ହରିଦାସଙ୍କ ଆବାସସ୍ଥଳ ବର୍ତ୍ତମାନ ପୁରୀର 'ସିଦ୍ଧବକୁଳ ମଠ' ଭାବରେ ପରିଚିତ ହୋଇଛି ।

ସନ୍ଥ କବୀର ଓ ହରିଦାସଙ୍କ ଭଳି ମୁସଲମାନ ସାଧକମାନେ ଯେ କେବଳ ଶ୍ରୀଜଗନ୍ନାଥଙ୍କ ପ୍ରତି ଆକର୍ଷିତ ହୋଇଛନ୍ତି ତାହା ନୁହେଁ ସାଲବେଗଙ୍କ ପରି ଅଣହିନ୍ଦୁ କବିମାନେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ବନ୍ଦନରେ ମୁଖର ହୋଇଛନ୍ତି । ତାଙ୍କ ପିତା ଲାଲବେଗ ଥିଲେ ମୋଗଲ ଶାସନ ଅଧୀନରେ ଜଣେ ଉଚ୍ଚ ପଦସ୍ଥ ଅଧିକାରୀ । ତାଙ୍କ ମାତା ଥିଲେ ପୁରୀ ଜିଲ୍ଲାର ଦାଣ୍ଡମୁକୁନ୍ଦପୁରର ହିନ୍ଦୁ ରମଣୀ । ସାଲବେଗଙ୍କ ମାତା ବ୍ରାହ୍ମଣୀ ହୋଇଥିଲେ ମଧ୍ୟ ପିତା ମୁସଲମାନ ହୋଇଥିବାରୁ ଜନ୍ମ ସୂତ୍ରେ ସେ ଥିଲେ ମୁସଲମାନ । ଯୌବନରେ ସେ ସୈନ୍ୟବାହିନୀରେ ଯୋଗଦେଇ ଶତ୍ରୁପକ୍ଷର ଅସ୍ତ୍ରାଘାତରେ ଶଯ୍ୟାଶାୟୀ ହୋଇ ଅକଥ୍ୟ ଯନ୍ତ୍ରଣା ଭୋଗ କରିଥିଲେ । ମାତ୍ର ମାତାଙ୍କର ପରାମର୍ଶକ୍ରମେ ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହୋଇ ଆରୋଗ୍ୟ ଲାଭ କରିଥିଲେ । ତେଣୁ ଶ୍ରୀଜଗନ୍ନାଥଙ୍କର କୃପାଧନ୍ୟ ସାଲବେଗ ଭକ୍ତି ତଦ୍‌ଗତ ହୋଇ 'ଆହେନୀଳ ଶଇଳ ପ୍ରବଳ ମତ୍ତ ବାରଣ', 'ଆହେ ନୀଳ ଗିରି ତୁମ ଶ୍ରୀଭୁଜେ ଦୟଣା କେରି କେରି' ଭଳି ବହୁ ଉଚ୍ଚକୋଟୀର ଭଜନ ରଚନା କରିଥିଲେ ।

ସନ୍ଥ ତୁଳସୀ ଦାସ 'ମୋହି ରାମ ସୋହି ଜଗଦୀଶା' ବୋଲି ପ୍ରକାଶ କରି ଶ୍ରୀରାମ ଓ ଶ୍ରୀଜଗନ୍ନାଥଙ୍କର ଅଭେଦ କଳ୍ପନା କରିଛନ୍ତି । ସେହିପରି ଭକ୍ତ ସାଲବେଗଙ୍କ ଦୃଷ୍ଟିରେ ଯିଏ ରଘୁନାଥ, ସିଏ ଗୋପୀନାଥ ଓ ସିଏ ପୁଣି ଶ୍ରୀଜଗନ୍ନାଥ । ତେଣୁ ସେ କେତେବେଳେ ତାଙ୍କୁ 'ଆହେ ରାମହରି' ବୋଲି ସମ୍ବୋଧନ କରିଛନ୍ତି ତ ପୁଣି କେତେବେଳେ ଶ୍ରୀଜଗନ୍ନାଥ ତାଙ୍କ ଦୃଷ୍ଟିରେ ପାଲଟି ଯାଇଛନ୍ତି 'କାଳିଆଧନ' । ପୁରୀ ବଡ଼ଦାଣ୍ଡ ନିକଟରେ ରାମାନନ୍ଦ ସଂପ୍ରଦାୟର ବଡ଼ଛତାମଠ ନିକଟରେ ସାଲବେଗଙ୍କର ସମାଧି ପୀଠ ଅବସ୍ଥିତ । ଏକଦା ବୃନ୍ଦାବନରୁ ବୃନ୍ଦାବନ ବିହାରୀଙ୍କ ଦର୍ଶନ ସାରି ସେ (ସାଲବେଗ) ଫେରୁଥିବାବେଳେ ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ନପାରିଥିବାର ଆଶଙ୍କା ଉପୁଜିଥିଲା । ଏହି ସମୟରେ ତାଙ୍କର ଆତୁର ପ୍ରାର୍ଥନାକୁ ମହାପ୍ରଭୁ ଏଡ଼ାଇ ପାରିନଥିଲେ । ଫଳସ୍ୱରୂପ ବଳଗଣ୍ଡିଠାରେ ରଥ ଅଟକି ରହିଥିବାର ଜନଶ୍ରୁତି ଶୁଣାଯାଏ । ତେଣୁ ସାଲବେଗ ନିଜ ଜୀବନର ଅନ୍ତିମ ସମୟ ସେଠାରେ ଅତିବାହିତ କରିଥିଲେ । ତାଙ୍କ ସମାଧି ପୀଠ ନିକଟରେ ଏବେବି ରଥ ଅଟକି ତାଙ୍କ ମାହାତ୍ମ୍ୟକୁ ସୂଚିତ କରୁଛି ।

ବିଂଶ ଶତାବ୍ଦୀରେ କେନ୍ଦ୍ରାପଡ଼ା ଜିଲ୍ଲାର କନିକାରେ ଜନ୍ମିତ ଉଜୀର୍‌ବେଗ୍ ସାଧକ ରାମଦାସଙ୍କଠାରୁ ଦୀକ୍ଷା ଗ୍ରହଣ କରି ଭଜନ ଜଣାଣାଦି ରଚନାରେ ପ୍ରବୃତ୍ତ ଥିଲେ । ସେ ସାଲବେଗଙ୍କ ପରି ଓଡ଼ିଆ ସାହିତ୍ୟରେ ଜଣେ ମୂର୍ଦ୍ଧଣ୍ୟ ପ୍ରତିଭା ରୂପେ ପରିଗଣିତ ହେଉନଥିଲେ ମଧ୍ୟ ନାଟକ ଓ ରାମଲୀଳା ପ୍ରଭୃତି ରଚନା କରି ନିଜ ସୃଷ୍ଟିଶୀଳତାର ସ୍ୱାକ୍ଷର ରଖିଯାଇଛନ୍ତି । ତାଙ୍କ ରଚିତ 'ଖୁଦୁରୁକୁଣୀ ଓଷା' ପ୍ରଚଳିତ ଖୁଦୁରୁକୁଣୀ ଓଷାଠାରୁ ସ୍ୱତନ୍ତ୍ର । ସଂପ୍ରତି ପ୍ରଚଳିତ ଖୁଦୁରୁକୁଣୀ ଓଷା ନବାକ୍ଷରୀ ବୃତ୍ତରେ ରଚିତ ଓ ପାଞ୍ଚ ଅଧ୍ୟାୟ ବିଶିଷ୍ଟ ହୋଇଥିବା ବେଳେ ଉଜିର୍‌ଙ୍କ ରଚିତ ଓଷା ଏଗାର ଅଧ୍ୟାୟ ବିଶିଷ୍ଟ ହେବା ସହିତ ବିବିଧ ରାଗରାଗିଣୀ ସମ୍ବଳିତ ହୋଇଛି । ଏହାର ପ୍ରାରମ୍ଭରେ ସେ ଶ୍ରୀଜଗନ୍ନାଥଙ୍କ ବନ୍ଦନରେ ମୁଖର ହୋଇ ଗାଇ ଉଠିଛନ୍ତି - 'ବନ୍ଦଇ ଜଗତନାଥ ହେ / ଭକ୍ତ ବାନ୍ଧବ ହରି/ ଶଙ୍ଖ ଚକ୍ର ଗଦାପଦ୍ମ ହେ / ଅଛ ଶ୍ରୀକରେ ଧରି ।' ମୁସଲମାନ ସଂପ୍ରଦାୟରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ଭଜନ ଜଣାଣାଦି ରଚନା ସହିତ ଦୀକ୍ଷା ଗ୍ରହଣ ପୂର୍ବକ ହରିନାମ ସଂକୀର୍ତ୍ତନରେ ମଗ୍ନ ରହିବା ତାଙ୍କର ଜଗନ୍ନାଥ ପ୍ରାଣତାକୁ ସୂଚିତ କରୁ ନାହିଁକି ?

ଶିଖଧର୍ମର ସଂସ୍ଥାପକ ଗୁରୁନାନକ ମଧ୍ୟ ଶ୍ରୀଜଗନ୍ନାଥଙ୍କ ପ୍ରତି ଆକର୍ଷିତ ହୋଇ ଶ୍ରୀକ୍ଷେତ୍ରକୁ ଆସିଥିଲେ । ସେତେବେଳେ ଶ୍ରୀଚୈତନ୍ୟ ମଧ୍ୟ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଥିଲେ । ଶ୍ରୀକ୍ଷେତ୍ରରେ ଶିଖ୍ ସଂପ୍ରଦାୟର ମଙ୍ଗୁମଠ ଓ ବାଉଳିମଠ ନାମକ ଦୁଇଟି ଅନୁଷ୍ଠାନ ରହିଛି । ଏଠାରେ ନାନକ ତାଙ୍କ ପୁତ୍ର 'ଶ୍ରୀଚାନ୍ଦ' ଓ ଶିଷ୍ୟମାନଙ୍କ ସହିତ ଅବସ୍ଥାନ କରିଥିଲେ । ଶ୍ରୀକ୍ଷେତ୍ର ରହଣୀ କାଳରେ ସେ ଶ୍ରୀଚୈତନ୍ୟଙ୍କ ହରିନାମ ସଂକୀର୍ତ୍ତନରେ ସାମିଲ ହୋଇଥିବା କଥା ଈଶ୍ୱର ଦାସଙ୍କ ରଚିତ 'ଶ୍ରୀଚୈତନ୍ୟ ଭାଗବତ'ରୁ ଜଣାଯାଏ । ଶ୍ରୀକ୍ଷେତ୍ରରେ ଅବସ୍ଥାନ କାଳରେ ସେ ଶ୍ରୀଜଗନ୍ନାଥଙ୍କ କୃପାରୁ ସମୁଦ୍ର ତଟସ୍ଥ ଏକ କୂପର ଲବଣାକ୍ତ ଜଳକୁ ମଧୁର କରିବା ସହିତ ଭକ୍ତମାନଙ୍କୁ ତାଙ୍କ ହାତ ପାପୁଲିରେ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଅଙ୍କିତ ଚିତ୍ର ପ୍ରଦର୍ଶନ ଭଳି ବହୁ ଅଲୌକିକ କର୍ମ ସଂପାଦନ କରିଥିବା କଥା ଜଣାଯାଏ । ଗୁରୁ ନାନକଙ୍କର ଏହି ଅଲୌକିକ କର୍ମର ସ୍ମାରକ ସ୍ୱରୂପ ମଙ୍ଗୁମଠ ଓ ବାଉଳିମଠର ନାଳି ପତାକାରେ ଧଳା ପାପୁଲିର ଚିତ୍ର ଅଙ୍କିତ ହୋଇଛି । ଜଗନ୍ନାଥ ପ୍ରାଣ ନାନକ ଦେବ ସମଗ୍ର ଆକାଶକୁ ବନ୍ଦାଣ ଥାଳି ଓ ତାରାମାନଙ୍କୁ ଦୀପ ଭାବରେ ଗ୍ରହଣ କରି ଶ୍ରୀଜଗନ୍ନାଥଙ୍କୁ ବନ୍ଦାପନା କରିବାକୁ ଇଚ୍ଛାପ୍ରକାଶ କରିଥିଲେ । ସେ ଶ୍ରୀକ୍ଷେତ୍ରରୁ ବିଦାୟ ନେବାବେଳେ ତତ୍କାଳୀନ ଗଜପତି ପ୍ରତାପରୁଦ୍ର ଦେବ ତାଙ୍କ ସହିତ ଜଗନ୍ନାଥ ସଡ଼କ ପର୍ଯ୍ୟନ୍ତ ଯାଇ ତାଙ୍କୁ ବିଦାୟ ଜଣାଇଥିଲେ ।





ଶ୍ରୀଜଗନ୍ନାଥ ସଂସ୍କୃତି କେବଳ ଆମ ଦେଶରେ ସୀମିତ ହୋଇ ରହିନାହିଁ । ଏହା ପ୍ରତିବେଶୀ ସିଂହଳ, ବାଂଲାଦେଶ, ନେପାଳ ଓ ମିଆନ୍‌ମାର ପ୍ରଭୃତି ଦେଶରେ ମଧ୍ୟ ପ୍ରସାର ଲାଭ କରିଛି । **ମିଆନ୍‌ମାର୍‌ର 'ପ୍ରୋମ୍' ସହରର ପ୍ରାଚୀନ ନାମ ଥିଲା ଶ୍ରୀକ୍ଷେତ୍ର । ବହିର୍ବାଣିଜ୍ୟରେ ସମୃଦ୍ଧ ଉତ୍କଳୀୟମାନେ ବ୍ରହ୍ମଦେଶରେ ଅବସ୍ଥାନ କରି ସେମାନଙ୍କ ଆରାଧ୍ୟ ଶ୍ରୀଜଗନ୍ନାଥଙ୍କ ପ୍ରସିଦ୍ଧ ପୀଠ ଶ୍ରୀକ୍ଷେତ୍ରର ନାମାନୁସାରେ 'ପ୍ରୋମ୍'ର ନାମ ରଖିଥିଲେ ଶ୍ରୀକ୍ଷେତ୍ର । ସେହିପରି ଶ୍ରୀଲଙ୍କାର ପେର୍‌ହେରା ପର୍ବ ସହିତ ରଥଯାତ୍ରାର ସାମ୍ୟ ଲକ୍ଷ୍ୟ କରାଯାଇପାରେ ।** ନବକଳେବର ସମୟରେ ପବିତ୍ରଦାରୁ (ନିମ୍ବଦାରୁ) ସଂଗ୍ରହ ସନ୍ଧାନ କରାଯିବା ପରି ସେଠାରେ ପଣସ ଗଛର ସନ୍ଧାନ କରାଯାଏ । ଦାରୁ ସନ୍ଧାନ ପରେ ତାକୁ ଯଥାରୀତି ପୂଜା କରାଯାଏ । ଉତ୍ସବ ସମୟରେ ରାଜା ହାତୀ ପିଠିରେ ବସି ଶୋଭାଯାତ୍ରାରେ ସାମିଲ୍ ହୁଅନ୍ତି । ନବକଳେବର ଓ ରଥଯାତ୍ରାର ସାମଞ୍ଜସ୍ୟ ଆମକୁ ଶ୍ରୀଜଗନ୍ନାଥ ସଂସ୍କୃତିର ବ୍ୟାପକତା ସଂପର୍କରେ ସୂଚିତ କରୁଛି । ବାଲି ଦ୍ୱୀପରେ ଶ୍ରୀଜଗନ୍ନାଥ ଶିବ ଭାବରେ ପୂଜିତ ହେଉଛନ୍ତି । ଶ୍ରୀଜଗନ୍ନାଥ ମଧ୍ୟ ଶୈବ ଚେତନାରେ 'ଭୈରବ' ରୂପେ ଗୃହୀତ ହୋଇଛନ୍ତି । ଆମ ପ୍ରତିବେଶୀ ନେପାଳରେ ମଧ୍ୟ ଶ୍ରୀଜଗନ୍ନାଥ ଉପାସନା ଲୋକପ୍ରିୟତା ଲାଭ କରିଛି । ଶ୍ରୀମନ୍ଦିରର ପ୍ରତିଷ୍ଠା କାଳରେ ନେପାଳ ନରେଶ ଶଙ୍କରଦେବ ଆବଶ୍ୟକ ବ୍ରହ୍ମଶିଳା (ଶାଳଗ୍ରାମ) ଯୋଗାଇ ଦେଇଥିବାରୁ ଗଜପତିଙ୍କ ପରି ସେ (ନେପାଳର ରାଜା) ସ୍ୱତନ୍ତ୍ର ପୂଜାର୍ଚ୍ଚନାର ଅଧିକାରୀ ହୋଇଛନ୍ତି । ମୁସଲମାନ ଅଧ୍ୟୁଷିତ ବାଂଲାଦେଶରେ ମଧ୍ୟ ଶ୍ରୀଜଗନ୍ନାଥ ଉପାସନା ସହିତ ରଥଯାତ୍ରା ଅନୁଷ୍ଠିତ ହେଉଛି । ପାଳବଂଶର ରାଜା ଯଶପାଳଙ୍କଦ୍ୱାରା ଢାକାରେ ଦ୍ୱାଦଶ ଶତାବ୍ଦୀରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା । ସେହି ସମୟରୁ ସେଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଥିବା ଜଣାଯାଏ ।

ଭୌତିକ ପ୍ରାଚୁର୍ଯ୍ୟ ସମୃଦ୍ଧ ଆମେରିକାରେ ଶ୍ରୀଜଗନ୍ନାଥଙ୍କର ବହୁମନ୍ଦିର ଗଢ଼ି ଉଠିଛି । ଯୁକ୍ତରାଷ୍ଟ୍ର ଆମେରିକା ସମେତ ସମଗ୍ର ଉତ୍ତର ଆମେରିକା ମହାଦେଶର ବୋଷ୍ଟନ୍, ବଲ୍ଟିମୋର, ୱାସିଂଟନ୍ ଡିସି, ଆଟ୍‌ଲାଣ୍ଟା, ନିଉ ଅର୍ଲିନ୍‌ସ, ଡଲାସ୍, ଚିକାଗୋ, ଲସ୍ ଆଞ୍ଜେଲସ୍, ମେକ୍ସିକୋ ସିଟି, ଭାଙ୍କୋଭର୍, ଟରେଣ୍ଟୋ, ମଣ୍ଟ୍ରିଲ୍, ନ୍ୟୁୟର୍କ ଓ ଫିଲାଡ଼େଲଫିଆ ପ୍ରଭୃତି ସ୍ଥାନରେ ଶ୍ରୀଜଗନ୍ନାଥ ପୂଜନ ଲୋକ ପ୍ରିୟତା ଲାଭ କରିବା ସହିତ ବଲ୍ଟିମୋର ଓ ମଣ୍ଟ୍ରିଲ ପ୍ରଭୃତି ମହାନଗରୀରେ ରଥଯାତ୍ରା ଅନୁଷ୍ଠିତ ହେଉଛି । ଏହାଛଡ଼ା ଇଟାଲିର ଭିଲ୍ଲା ବୃନ୍ଦାବନ, ଫ୍ଲୋରେନ୍ସ, ସ୍ପେନ୍‌ର ଅଲ୍‌କାନ୍ତେ, ଇଂଲଣ୍ଡର ଲଣ୍ଡନ ଓ ବର୍ମିହାମ୍, ସ୍ୱିଜର୍‌ଲାଣ୍ଡର ଜୁରିଚ୍, ବେଲ୍‌ଜିଅମ୍‌ର ବ୍ରୁସେଲ୍‌ସ, ଅଷ୍ଟ୍ରେଲିଆର ମେଲ୍‌ବୋର୍ଣ୍ଣ, ଦକ୍ଷିଣ ଆଫ୍ରିକାର ଡର୍ବାନ୍ ଓ ଋଷିଆର ମସ୍କୋ ପ୍ରଭୃତି ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରମାନ ଗଢ଼ି ଉଠିଛି । ଇଂଲଣ୍ଡର ଲଣ୍ଡନ ଓ ବର୍ମିଂହାମ୍‌ରେ ରଥଯାତ୍ରା ଅନୁଷ୍ଠିତ ହେଉଛି ।

ଜଗନ୍ନାଥ ଶବ୍ଦ ସହିତ ପୁର, ପାଟଣା, ଶାସନ ଓ ପ୍ରସାଦ ଭଳି ଶବ୍ଦ ସଂଯୁକ୍ତ ହୋଇଥିବା ବହୁ ସ୍ଥାନ ଆମ ରାଜ୍ୟରେ ପରିଦୃଷ୍ଟ ହୋଇଥାଏ । କେବଳ ଆମରାଜ୍ୟ କାହିଁକି, ପ୍ରତିବେଶୀ ବଙ୍ଗଳା, ବିହାର, ଝାଡ଼ଖଣ୍ଡ, ଆନ୍ଧ୍ର ଓ ମଧ୍ୟପ୍ରଦେଶ ସମେତ ଦକ୍ଷିଣରେ ତାମିଲନାଡୁ, କର୍ଣ୍ଣାଟକ, ପଶ୍ଚିମରେ ଗୁଜୁରାଟ, ମହାରାଷ୍ଟ୍ର, ପୂର୍ବରେ ଆସାମ, ତ୍ରିପୁରା, ଯଥା- ଉତ୍ତରରେ ରାଜସ୍ଥାନ ଓ ଉତ୍ତରପ୍ରଦେଶର ବହୁସ୍ଥାନ ଶ୍ରୀଜଗନ୍ନାଥଙ୍କ ପବିତ୍ର ନାମର ସ୍ୱାକ୍ଷର ବହନ କରୁଛି । ଏପରିକି ବାଂଲାଦେଶର କେତେକ ସ୍ଥାନର ନାମ ମଧ୍ୟ ଶ୍ରୀଜଗନ୍ନାଥଙ୍କ ନାମରେ ନାମିତ ହୋଇ ତାଙ୍କର ବ୍ୟାପକତାକୁ ସୂଚିତ କରୁଛି ।

ବାସ୍ତବରେ ଶ୍ରୀଜଗନ୍ନାଥ ଜଣର ନୁହନ୍ତି ସେ ଗଣର । ଜାତିଧର୍ମ ନିର୍ବିଶେଷରେ ପୃଥିବୀର ବିଭିନ୍ନ ପ୍ରାନ୍ତର ଅଗଣିତ ନେତାଙ୍କ ଅକୃତ୍ରିମ ଶ୍ରଦ୍ଧାହିଁ ତାଙ୍କୁ ଗଣଦେବତାର ମାନ୍ୟତା ଦେଇଛି । ସେ କେବଳ ନୀଳାଦ୍ରିନାଥ ହୋଇ ନରହି, ପାଲଟି ଯାଇଛନ୍ତି ଜଗତରନାଥ । ଶ୍ରୀଜଗନ୍ନାଥ ସଂସ୍କୃତିର ଏହି ଜୟଯାତ୍ରା ଅନାହତ ରହିଲେ ଯୁଦ୍ଧଭୀତ, କ୍ଷୁଧା ପୀଡ଼ିତ ଓ ଉପେକ୍ଷା ଜର୍ଜରିତ ଏହି ବସୁନ୍ଧରା ଗ୍ଲାନି ଓ ହତାଶାର ଅନ୍ଧକାରରେ ପରିଣତ ନହୋଇ ମଧୁକ୍ଷରା ହୋଇ ଉଠିବ ।

**ସହାୟତା ପୁସ୍ତକ :**


୧. ଶ୍ରୀଜଗନ୍ନାଥ ଓ ନାନକ ଦେବ - ଡକ୍ଟର ବଂଶୀଧର ମହାନ୍ତି

୨. ସନ୍ଥ କବୀରଙ୍କ ଶ୍ରୀଜଗନ୍ନାଥ ଦର୍ଶନ - ଡକ୍ଟର ଜଗନ୍ନାଥ ମହାନ୍ତି

୩. ଯୀଶୁ ଓ ଜଗନ୍ନାଥ, ସଂହତିର ସାଂସ୍କୃତିର ସେତୁ - ଡକ୍ଟର ରମେଶ ପତ୍ରୀ

୪. ବିଦେଶରେ ଜଗନ୍ନାଥ ସଂସ୍କୃତି - ଶ୍ରୀ ଅଲେଖ ଚନ୍ଦ୍ର ପଢ଼ିଆରୀ

୫. ଠାକୁର ହରିଦାସ ଓ ଶ୍ରୀକ୍ଷେତ୍ରପୁରୀ - ଡଃ ଲାବଣ୍ୟ ଚନ୍ଦ୍ର ସାହୁ

୬. ଯବନ କବି ଉଜିର୍ ବେଗ୍ ଏକ ଲୁପ୍ତ ପ୍ରତିଭା - ଗିରିଶ ସାହୁ

୭. ଭାରତ ଓ ବାଂଲାଦେଶରେ ଶ୍ରୀଜଗନ୍ନାଥଙ୍କ ନାମରେ ନାମିତ ସ୍ଥାନ - ଆର୍ ବାଲକ୍ରିଷ୍ଣନ୍



ମଣ୍ଡୁଆ

କେନ୍ଦୁଝରଗଡ଼








# ଶଙ୍ଖକ୍ଷେତ୍ରେ ଜୟ ଶଙ୍ଖଧ୍ୱନି

ପ୍ରମୋଦ କୁମାର ନାୟକ

ବିଶ୍ୱସ୍ରଷ୍ଟାଙ୍କ ସୃଷ୍ଟି ସାମ୍ରାଜ୍ୟ ବ୍ୟାପକ ଅର୍ଥରେ ବିଶ୍ୱବ୍ରହ୍ମାଣ୍ଡ ନାମରେ ଅଭିହିତ ହେଲେ ହେଁ, ଏହାର ସୂକ୍ଷ୍ମାତ୍ ସୂକ୍ଷ୍ମକ୍ଷେତ୍ର ବିଭିନ୍ନ ନାମକରଣରେ ନାମିତ । ପ୍ରତ୍ୟେକ କ୍ଷେତ୍ରର ନାମକରଣରେ ଯଥାର୍ଥତା ପ୍ରତିପାଦନ ନିମିତ୍ତ ପ୍ରମାଣିକ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ସେଗୁଡ଼ିକ ହେଲା - କିମ୍ବଦନ୍ତୀମୂଳକ, ପୌରାଣିକ ଓ ଐତିହାସିକ । ଏହି ସମସ୍ତ ପ୍ରକାର ପ୍ରାମାଣିକ ତଥ୍ୟ ଉପରେ ପ୍ରତିଷ୍ଠିତ କ୍ଷେତ୍ର ଶଙ୍ଖକ୍ଷେତ୍ର । ସ୍ମରଣାତୀତ କାଳରୁ, ପୂତ ପବିତ୍ରଧାମ ଶଙ୍ଖକ୍ଷେତ୍ର, ମର୍ତ୍ତ ବୈକୁଣ୍ଠ, ଭୂସ୍ୱର୍ଗ, ଶ୍ରୀକ୍ଷେତ୍ର, ଶ୍ରୀନୀଳାଚଳ, ନୀଳାଦ୍ରି ବିହାର, ନୀଳଶୈଳ, ଶ୍ରୀଧାମ, ଶଙ୍ଖ ନାଭିମଣ୍ଡଳ, କମ୍ବୁକଟକ, ପୁରୁଷୋତ୍ତମ, ପୁରୀ ଇତ୍ୟାଦି । ଏହି ପୂତ ପବିତ୍ର କ୍ଷେତ୍ରକୁ ଯୁଗ ଯୁଗ ଧରି, ମହିମାମଣ୍ଡିତ କରି ଅଧିଷ୍ଠାନ କରିଛନ୍ତି, ଭାବ, ଭକ୍ତି ଓ ଗତି ମୁକ୍ତିଦାତା ଦାରୁଦେବତା ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ ହେଉଛନ୍ତି ତ୍ରିଭୁବନ ନାଥ । ସେ ଲୀଳାମୟ । ତେଣୁ ଭିଆଇଛନ୍ତି ବାରମାସକୁ ତେରପର୍ବ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ଦିନ, ପ୍ରତ୍ୟେକ ମୁହୂର୍ତ୍ତ ନିତ୍ୟରାସର ଆସର ଜନମାନସକୁ ପ୍ରେମଭକ୍ତି ରଜ୍ଜୁରେ ଏକାକାର କରି ଦେଉଛି । ଶ୍ରୀଜଗନ୍ନାଥଙ୍କର ପର୍ବପର୍ବାଣିମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଉଛି ଘୋଷଯାତ୍ରା ବା ରଥଯାତ୍ରା । ଏହା ମଧ୍ୟ ବହୁଧା ନାମରେ ନାମିତ । ଯଥା- ଶକଟଯାତ୍ରା, କନକପୁରୀ ଯାତ୍ରା, ମହାବେଦୀ ଯାତ୍ରା, ନବଦିନାତ୍ମକ ଯାତ୍ରା, ଆଡ଼ପଯାତ୍ରା, ଦଶାବତାର ଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା, ଘୋଷ ଯାତ୍ରା, ରଥଯାତ୍ରା ଇତ୍ୟାଦି । ଏହି କ୍ଷେତ୍ରର ନାମକରଣ ଯେପରି ପ୍ରମାଣିକ ବୈଶିଷ୍ଟ୍ୟ ଉପରେ ପର୍ଯ୍ୟବସିତ, ସେହିପରି ଯାତ୍ରାର ନାମକରଣ ସମୂହରେ ମଧ୍ୟ ପ୍ରମାଣିକ ବୈଶିଷ୍ଟ୍ୟ ବିଦ୍ୟମାନ ।

ପୁରାଣ ଶାସ୍ତ୍ର ସିଦ୍ଧାନ୍ତନୁସାରେ, ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଏକ ବ୍ୟାପକ କ୍ଷେତ୍ର । ଏହି କ୍ଷେତ୍ରର ପରିସୀମା ହେଉଛି, ତୀର୍ଥରାଜ ମହୋଦଧିର ଉତ୍ତରପାର୍ଶ୍ୱ, ସୁକାନ୍ତିତନୁଜା (ମହାନଦୀ)ର ଦକ୍ଷିଣପାର୍ଶ୍ୱ, ସିନ୍ଧୁଗାମିନୀ ବୈତରଣୀ ଓ ରଷିକୁଲ୍ୟା ନଦୀଦ୍ୱୟର ମଧ୍ୟାଞ୍ଚଳ, ଶାସ୍ତ୍ରରେ ଉଲ୍ଲେଖ ଅଛି -

‘ଋଷିକୁଲ୍ୟା ସମାସାଦ୍ୟ ଯାବତ୍ ବୈତରଣୀ ନଦୀ,
ତାବତ୍ କ୍ଷେତ୍ରସ୍ୟ ମାହାତ୍ମ୍ୟ ବର୍ତ୍ତତେ ମୁନିପୁଙ୍ଗବ ।
ସମୁଦ୍ରୋସ୍ୟୋତ୍ତରେ ତୀରେ ମହାନଦ୍ୟାସ୍ତୁ ଦକ୍ଷିଣେ,



ତରମ୍ୟାରଭ୍ୟ ତତ୍‌କ୍ଷେତ୍ର ରାଜମାନଂ ସୁପାବନମ୍ ।’
(ନୀଳାଦ୍ରି ମହୋଦୟ)

ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ବ୍ୟାପକତା ନେଇ ପୁରାଣ ସାହିତ୍ୟରେ ରାଶି ରାଶି ପ୍ରମାଣ ପରିଲକ୍ଷିତ ହୋଇଥାଏ । ତନ୍ମଧ୍ୟରୁ ‘ସ୍କନ୍ଦପୁରାଣ’ର ଉତ୍କଳଖଣ୍ଡ ସିଦ୍ଧାନ୍ତ ଅନୁସାରେ -

‘ସର୍ବ ଦେଶ ମଧ୍ୟେଶ୍ରେଷ୍ଠ ଏ ଉତ୍କଳ ଦେଶ,
ପୃଥିବୀର ଚୂଡ଼ାମଣି ସଦୃଶ ପ୍ରକାଶ ।
ଦକ୍ଷିଣେ ସିନ୍ଧୁଗାମିନୀ ଋଷିକୁଲ୍ୟା ନଦୀ,
ଉତ୍ତରେ ସୁବର୍ଣ୍ଣରେଖା ଆଉ ମହାନଦୀ ।
ଯେତେ ପ୍ରଦେଶ ଏହାର ମଧ୍ୟେ ଅବସ୍ଥିତ,
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ନାମେ ପରିଚିତ ।।’

ଉପଯୁକ୍ତ ପୁରାଣ ଶାସ୍ତ୍ର ମାନ୍ୟତାରେ, ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଉତ୍କଳ ଭୂଖଣ୍ଡ ଏକ ବ୍ୟାପକ କ୍ଷେତ୍ର । ଏହି ବ୍ୟାପକ କ୍ଷେତ୍ର ମଧ୍ୟରେ ପ୍ରତିଷ୍ଠିତ କ୍ଷେତ୍ରଗୁଡ଼ିକ ହେଲା, ଶଙ୍ଖକ୍ଷେତ୍ର ପୁରୀ, ଚକ୍ରକ୍ଷେତ୍ର ତଥା ଶୈବ କ୍ଷେତ୍ର ଏକାମ୍ରକାନନ, ଅର୍କକ୍ଷେତ୍ର କୋଣାର୍କ, ଗଦାକ୍ଷେତ୍ର ତଥା ତନ୍ତ୍ରପୀଠ ଶ୍ରୀବିରଜା ଯାଜପୁର, ସତ୍ୟ ପ୍ରକାଶ କ୍ଷେତ୍ର ସାକ୍ଷୀଗୋପାଳ, ଶିବାର୍ଚ୍ଚନ କ୍ଷେତ୍ର ନୟାଗଡ଼ର ଶରଣକୂଳ, ବିଜୟକ୍ଷେତ୍ର ଓଡ଼ଗାଁ, ଖଣ୍ଡପଡ଼ାର ଶକ୍ତିପୀଠର ମଣିନାଗ, ଶୈଳ ଶୈବକ୍ଷେତ୍ର କପିଳାସ ଓ ସର୍ବୋପରି କଣ୍ଟିଲୋର ବ୍ରହ୍ମାଦି ପର୍ବତ । ଯେଉଁଠାରେ ବିଦ୍ୟମାନ





ଅଛି ସୃଷ୍ଟିର ଆଦିଦେବତା କଳ୍ପାନ୍ତ ଠାକୁର ଶ୍ରୀନୀଳମାଧବଙ୍କ ବିଜେସ୍ଥଳୀ । କିମ୍ବଦନ୍ତୀ କହେ, ବ୍ରହ୍ମାଦ୍ରି ପର୍ବତରେ ସୃଷ୍ଟିକର୍ତ୍ତା ବ୍ରହ୍ମା, ପୁରାକାଳରେ ମାଧବଙ୍କୁ - ପୂଜାରାଧନା କରିଥିଲେ । ପରବର୍ତ୍ତୀ କାଳରେ ଶ୍ରୀନୀଳମାଧବ ହିଁ ଦାରୁବ୍ରହ୍ମ ରୂପରେ ଶଙ୍ଖକ୍ଷେତ୍ରରେ ଅଧିଷ୍ଠିତ ଓ ପୂଜିତ ହେଲେ ।

ଉପଯୁକ୍ତ ତୀର୍ଥକ୍ଷେତ୍ରମାନଙ୍କ ମଧ୍ୟରୁ ଶ୍ରୀବିଷ୍ଣୁଙ୍କ ଆୟୁଧମାନଙ୍କ ନାମରେ ନାମିତ ଚାରିକ୍ଷେତ୍ର ସ୍ୱତନ୍ତ୍ର ମାନ୍ୟତା ପ୍ରାପ୍ତ । ସେହି କ୍ଷେତ୍ରଗୁଡ଼ିକ ହେଲା - ଶଙ୍ଖକ୍ଷେତ୍ର ନୀଳାଚଳ, ଗଦାକ୍ଷେତ୍ର ଶ୍ରୀବିରଜା ଯାଜପୁର, ଚକ୍ରକ୍ଷେତ୍ର ଏକାମ୍ର କାନନ ଓ ପଦ୍ମକ୍ଷେତ୍ର କୋଣାର୍କ । ଏହି କ୍ଷେତ୍ରମାନଙ୍କର ସୃଷ୍ଟି ତଥା ନାମକରଣ ସମ୍ପର୍କରେ ବାମଦେବ ସଂହିତା, ପ୍ରଥମ ଅଧ୍ୟାୟରେ ଉଲ୍ଲେଖ ଅଛି -

'ଚତୁରାୟୁଧଂ ହି ନିକ୍ଷିପ୍ତ ତଦାତୁ ବ୍ରହ୍ମଣାଭୁତମ୍,
ପୁରୁଷୋତ୍ତମ କୈଶଙ୍ଖେ ବିରଜେ ଗଦା ତଥା,
ଏକମ୍ରକେ ଚକ୍ରମପି କୋଣାର୍କେ ପଦ୍ମମେବହି ।'

ପୁରାଣଶାସ୍ତ୍ର ସିଦ୍ଧାନ୍ତାନୁସାରେ ଜଣାଯାଏ, ସତ୍ୟଯୁଗରେ ଯେତେବେଳେ ପ୍ରବଳ ପ୍ରତାପୀ ଗୟାସୁର, ଦେବବୃନ୍ଦଙ୍କୁ ନାନାଦି କଷ୍ଟଦେଲା, ସେତେବେଳେ ଦେବଗଣଙ୍କ ଅନୁରୋଧ କ୍ରମେ ଶ୍ରୀବିଷ୍ଣୁ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ଯୁଦ୍ଧରେ ଗୟାସୁରକୁ ବଧକରି ଶ୍ରୀବିଷ୍ଣୁ ବିଜୟୋଲ୍ଲାସରେ ନୃତ୍ୟ କଲେ । ଉନ୍ନତ ନୃତ୍ୟର ତାଳେ ତାଳେ ଶ୍ରୀବିଷ୍ଣୁଙ୍କ ଶ୍ରୀକରକମଳସ୍ଥିତ ଆୟୁଧମାନ ଉତ୍‌କ୍ଷିପ୍ତ ହେଲା ଏବଂ ଉତ୍କଳ ପ୍ରଦେଶରେ ପତିତ ହେଲା । ଫଳତଃ, ଯେଉଁ କ୍ଷେତ୍ରରେ ଶ୍ରୀବିଷ୍ଣୁଙ୍କ ଯେଉଁ ଆୟୁଧ ନିପତିତ ହେଲା, ତଦନୁଯାୟୀ ସେ କ୍ଷେତ୍ରର ନାମକରଣ କାଳକ୍ରମେ ପ୍ରସିଦ୍ଧିଲାଭ କଲା । ଶାସ୍ତ୍ରରେ ଉଲ୍ଲେଖ ଅଛି -

'ଗଦାକ୍ଷେତ୍ରଂ ଚ ବିରଜାମେକାମ୍ରଂ ସଜ୍ଞାକମ୍,
କୋଣାର୍କଂ ପଦ୍ମକ୍ଷେତ୍ରଂ ଚ ଶଙ୍ଖକ୍ଷେତ୍ରଂ ନୀଳାଚଳମ୍ ।'
(ବାମଦେବ ସଂହିତା)

ଏହି ଚାରିକ୍ଷେତ୍ର ମଧ୍ୟରୁ ଶଙ୍ଖକ୍ଷେତ୍ର ଶ୍ରୀନୀଳାଚଳ ସର୍ବଶ୍ରେଷ୍ଠ ଆସନରେ ପ୍ରତିଷ୍ଠିତ । ଦେବଭୂମି ଭାରତବର୍ଷ ମଧ୍ୟରେ ଶ୍ରୀନୀଳାଚଳଧାମ ଜାତି, ବର୍ଣ୍ଣ, ଧର୍ମ ଓ ସମ୍ପ୍ରଦାୟ ନିର୍ବିଶେଷରେ ପବିତ୍ର ତୀର୍ଥକ୍ଷେତ୍ର ରୂପେ ବେଦ ବନ୍ଦିତ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ -

'ଜଗତ ସଲିଳେ ଭାରତ କମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।
ନାହିଁ ଜାତିଭେଦ, ନାହିଁ ଧର୍ମଭେଦ
ସାମ୍ୟ, ମୈତ୍ରୀବାଣୀ ଗାଏ ଯାରବେଦ ।'

ଭୌଗୋଳିକ ସୀମା ସରହଦ ତଥା ଶାସ୍ତ୍ରୀୟ ସିଦ୍ଧାନ୍ତାନୁସାରେ ଶଙ୍ଖକ୍ଷେତ୍ର ନୀଳାଚଳର ପରିସୀମା ହେଉଛି ଦକ୍ଷିଣା ବର୍ତ୍ତୁକ ଶଙ୍ଖ ସଦୃଶ । ଦକ୍ଷିଣା ବର୍ତ୍ତକ ଶଙ୍ଖରେ ଆକୃତ ହେଉଛି ଭୌମାକୃତ ଅର୍ଥାତ୍ ତ୍ରିକୋଣାକାର । ଜଗନ୍ନାଥ ପୁରାଣରେ ଉଲ୍ଲେଖ ଅଛି -

'ଦକ୍ଷିଣାବର୍ତ୍ତକ ଶଙ୍ଖ ଯେଉଁ ପରକାର
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ତେମନ୍ତ ପ୍ରକାର ।'

ବାଙ୍କି ମୁହାଣ ନଦୀ, ମିଟିଆଣି ନଦୀ, ମଙ୍ଗଳାନଦୀ ଓ ତୀର୍ଥରାଜ ମହୋଦଧି ପରିବେଷ୍ଟିତ ଦ୍ୱୀପାଞ୍ଚଳ ହିଁ ଶଙ୍ଖକ୍ଷେତ୍ର ନାମରେ ଅଭିହିତ । ଏହି ପବିତ୍ର କ୍ଷେତ୍ରର ବିସ୍ତୀର୍ଣ୍ଣତା ଥିଲା ଦଶଯୋଜନ ଏବଂ ଆୟତନ ପାଞ୍ଚଯୋଜନ । ଶାସ୍ତ୍ର ସିଦ୍ଧାନ୍ତାନୁସାରେ -

'ଦଶଯୋଜନଂ ବିସ୍ତୀର୍ଣ୍ଣଂ ପଞ୍ଚଯୋଜନ ମାୟନ୍ତମ୍
ନାନାଶ୍ଚର୍ଯ୍ୟ ସମାଯୁକ୍ତଂ କ୍ଷେତ୍ର ପରମ ଦୁର୍ଲ୍ଲଭମ୍ ।'
(ବ୍ରହ୍ମ ପୁରାଣ - ୪ର୍ଥ ଅଧ୍ୟାୟ)

କାଳକ୍ରମେ ଏହି ବିସ୍ତୀର୍ଣ୍ଣ ଶଙ୍ଖକ୍ଷେତ୍ରର ଆୟତନ ସଙ୍କୁଚିତ ହେବା କଥା ପୁରାଣ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇଅଛି । ତନ୍ମଧ୍ୟରୁ ସ୍କନ୍ଦପୁରାଣ ସିଦ୍ଧାନ୍ତାନୁସାରେ, ଶଙ୍ଖକ୍ଷେତ୍ର ତ୍ରିକୋଣାକାର ଏବଂ ପାଞ୍ଚକୋଶ ବିଶିଷ୍ଟ । ବାମଦେବ ସଂହିତା ସିଦ୍ଧାନ୍ତରେ ଶଙ୍ଖକ୍ଷେତ୍ର ପାଞ୍ଚକ୍ରୋଶ । ଏହି ଦୃଷ୍ଟିରୁ ଏହି କ୍ଷେତ୍ର ପଞ୍ଚକ୍ରୋଶୀ ନାମରେ ପ୍ରସିଦ୍ଧିଲାଭ କରିଅଛି । ଶଙ୍ଖକ୍ଷେତ୍ରର ପଞ୍ଚକ୍ରୋଶ ମଧ୍ୟରୁ ଦୁଇକ୍ରୋଶ ପରିମିତ ସ୍ଥାନ ବଙ୍ଗୋପସାଗର ଗର୍ଭରେ ବିଲୀନ ହୋଇଯାଇଅଛି । ଅବଶିଷ୍ଟ ତିନିକ୍ରୋଶ ସ୍ଥାନ ଅଧୁନା ବିଦ୍ୟମାନ ଅଛି । ସାଗର ଗର୍ଭରେ ଦୁଇକ୍ରୋଶ ସ୍ଥାନ ବିଲୀନ ହୋଇ ଯାଇଥିବା ଦୃଷ୍ଟେ, ତୀର୍ଥରାଜ ମହୋଦଧି ନାମରେ ନାମିତ ଓ ମହିମାବନ୍ତ । ଶାସ୍ତ୍ରରେ ଉଲ୍ଲେଖ ଅଛି -

'ଶୃଣୁ ବୈଷ୍ଣବ କ୍ଷେତ୍ରସ୍ୟ ଚାୟତଂ ପଞ୍ଚକୋଶ କମ୍
ଦ୍ୱିକୋଶ ସାଗର[illegible] ସ୍ୟାତ୍ ତ୍ରିକୋଶଂ ପୃଥିବୀ ତଳେ ।'
(ବାମଦେବ ସଂହିତା)

ତ୍ରିକୋଣାକୃତି ଦକ୍ଷିଣାବର୍ତ୍ତକ ଶଙ୍ଖ ସଦୃଶ ଶଙ୍ଖକ୍ଷେତ୍ରର ମସ୍ତକ ଅର୍ଥାତ୍ ପଶ୍ଚିମ ସୀମାନ୍ତରେ ଶ୍ରୀଲୋକନାଥ, ଅଗ୍ରଭାଗରେ ଅର୍ଥାତ୍ ପୂର୍ବ ସୀମାରେ ଶ୍ରୀବିଳେଶ୍ୱର ମହାଦେବ, ମଧ୍ୟଭାଗରେ ମାଉସୀ ମା' ଏବଂ ଶଙ୍ଖର କେନ୍ଦ୍ରସ୍ଥଳରେ ରୋହିଣୀ କୁଣ୍ଡ ଓ କଳ୍ପବୃକ୍ଷ ବିଦ୍ୟମାନ । ଶଙ୍ଖର ନାଭିଦେଶରେ ଶଙ୍ଖକ୍ଷେତ୍ରର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ଭବ୍ୟ ମନ୍ଦିର ସଗୌରବେ ଦଣ୍ଡାୟମାନ । ଭବ୍ୟ ଶ୍ରୀମନ୍ଦିର ଶଙ୍ଖର ନାଭି ପ୍ରଦେଶରେ ଅବସ୍ଥିତ ଥିବା ଦୃଷ୍ଟେ, ଏହି କ୍ଷେତ୍ରକୁ ନାଭିକ୍ଷେତ୍ର ଓ ଶଙ୍ଖ ନାଭିମଣ୍ଡଳ ନାମରେ ଶାକ୍ତତତ୍ତ୍ୱ ପ୍ରତିପାଦନ କରିଥାଏ ।

ପୁରାଣ ଶାସ୍ତ୍ରର ସିଦ୍ଧାନ୍ତାନୁସାରେ ଯେତେବେଳେ ପ୍ରଜାପତି ପଦବୀରେ ଦକ୍ଷ ଅଭିଷିକ୍ତ ହେଲେ, ସେତେବେଳେ ସେ ଅହମିକା ବଶତଃ ଯଜ୍ଞର ଆୟୋଜନ କରିଥିଲେ । ଏହି ଯଜ୍ଞକୁ ଦକ୍ଷ, ସମସ୍ତ ଦେବଗଣଙ୍କୁ ବରଣ କରିଥିଲେ, ଅଥଚ ତଦୀୟ ଜ୍ୟେଷ୍ଠା କନ୍ୟା ସତୀ





ଏବଂ ଜ୍ୟେଷ୍ଠଜାମାତା ସଦାଶିବଙ୍କୁ ବରଣ କରିନଥିଲେ । ଫଳତଃ ପିତାଙ୍କର ଏତାଦୃଶ ଅପମାନ ସତୀଙ୍କୁ ବ୍ୟତିବ୍ୟସ୍ତ ବୋଧହେଲା । ସେ ଆତ୍ମଗ୍ଳାନି ଓ ଆତ୍ମାଭିମାନରେ ପିତାଙ୍କର ଯଜ୍ଞାନଳରେ ଆତ୍ମାହୂତି ଦେଲେ । ପ୍ରାଣପ୍ରତିମ ସତୀଙ୍କ ଅର୍ଦ୍ଧ ଦଗ୍ଧ ଶରୀରକୁ ସଦାଶିବ ସ୍ୱହସ୍ତରେ ଧାରଣ ପୂର୍ବକ ଗଗନ ମାର୍ଗରେ ଇତଃସ୍ତତ ଭ୍ରମଣ କରିବାକୁ ଲାଗିଲେ । ଦେବବୃନ୍ଦ ସଦାଶିବଙ୍କ ଏତାଦୃଶ କାର୍ଯ୍ୟକଳାପକୁ ଅମଙ୍ଗଳ ମନେ କଲେ । ତେଣୁ ଏହାର ନିରାକରଣ ସକାଶେ ଶ୍ରୀବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ଶ୍ରୀବିଷ୍ଣୁ ଦେବବୃନ୍ଦଙ୍କ ପ୍ରାର୍ଥନାକୁ ସମ୍ମତ ଜଣାଇ ସ୍ୱଆୟୁଧ ସୁଦର୍ଶନଙ୍କୁ ଆଦେଶ ଦେଲେ ଯେ, ଶିବଙ୍କ ହସ୍ତସ୍ଥିତ ସତୀଙ୍କ ମରଶରୀରକୁ ଖଣ୍ଡ ଖଣ୍ଡ କରି ଦିଅ । ଶ୍ରୀବିଷ୍ଣୁଙ୍କ ଆଦେଶାନୁସାରେ ସୁଦର୍ଶନ ସତୀଙ୍କ ମରଶରୀରକୁ ଖଣ୍ଡ ଖଣ୍ଡ କରି ଦେଇଥିଲେ । ଏହି ଖଣ୍ଡାଂଶ ମଧ୍ୟରୁ ସତୀଙ୍କ ନାଭିଦେଶ ଶଙ୍ଖକ୍ଷେତ୍ରର ଶଙ୍ଖ ମଧ୍ୟଭାଗରେ ପତିତ ହେଲା । ଏହି ଦୃଷ୍ଟିରୁ, ଏହି କ୍ଷେତ୍ର 'ନାଭିକ୍ଷେତ୍ର' ବା 'ଶଙ୍ଖନାଭି ମଣ୍ଡଳ' ନାମରେ ପ୍ରସିଦ୍ଧି ଲାଭ କଲା । ଶାସ୍ତ୍ରରେ ଉଲ୍ଲେଖ ଅଛି -

'ଉତ୍କଳେ ନାଭିଦେଶଶ୍ଚ ବିମଳା ପୁରୁଷୋତ୍ତମେ ।
ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ।।' (କପିଳ ସଂହିତା)

ଦ୍ୱାପର ଯୁଗରେ ଦ୍ୱାରକାଧୀଶ ଶ୍ରୀକୃଷ୍ଣଙ୍କର ସ୍ୱର୍ଣ୍ଣମୟୀ ଦ୍ୱାରକାପୁରୀ ଦଶ ଆବରଣ ମଧ୍ୟରେ ପରିବେଷ୍ଟିତ ଥିଲା । କୃଷ୍ଣାବତାରୀ ଦାରୁଦେବତା ଶ୍ରୀଜଗନ୍ନାଥଙ୍କର ଶଙ୍ଖନାଭି ମଣ୍ଡଳ ତିନି ଆବରଣ ଦ୍ୱାରା ପରିବେଷ୍ଟିତ । ବାମଦେବ ସଂହିତା ସିଦ୍ଧାନ୍ତାନୁସାରେ, ଶଙ୍ଖକ୍ଷେତ୍ରର ପ୍ରଥମ ଆବରଣ ମଧ୍ୟରେ ବିରାଜମାନ କରିଛନ୍ତି ଆଦ୍ୟାଶକ୍ତି ବିମଳା, ରୋହିଣୀ କୁଣ୍ଡ, କଳ୍ପବୃକ୍ଷ ଓ ଈଶାନେଶ୍ୱର ମହାଦେବ । ଦ୍ୱିତୀୟ ଆବରଣ ମଧ୍ୟରେ ଅଛନ୍ତି ମଣିକର୍ଣ୍ଣିକା ଘାଟସ୍ଥିତ କପାଳମୋଚନ ମହାଦେବ, ହରଚଣ୍ଡୀ, ପତିତପାବନୀ, ତୀର୍ଥ ଶ୍ୱେତଗଙ୍ଗା, ମତ୍ସ୍ୟମାଧବ, ଶ୍ୱେତମାଧବ, ଭଗବତୀ ଦକ୍ଷିଣ କାଳିକା ତଥା ଚଣ୍ଡରୂପା ଶ୍ମଶାନଚଣ୍ଡିକା । ସଂକ୍ଷେପରେ କହିଲେ ଏହି ଆବରଣ ମଣିକର୍ଣ୍ଣିକା ଘାଟ ନିକଟରୁ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ପରିବ୍ୟାପ୍ତ । ତୃତୀୟ ଆବରଣ ମଧ୍ୟରେ ଅଛନ୍ତି - ସମୁଦ୍ରତଟସ୍ଥ କୋଟି ଲିଙ୍ଗେଶ୍ୱର, ଯମେଶ୍ୱର ମହାଦେବ ଏବଂ ତତ୍‌ସମ୍ମୁଖସ୍ଥ ବୈଦିକ ଋଷି କଣ୍ଡୁଙ୍କର ଆଶ୍ରମ ମଣ୍ଡଳ । ଏତଦ୍‌ଭିନ୍ନ ଶ୍ରୀମନ୍ଦିର ପଶ୍ଚିମରେ ସର୍ବମଙ୍ଗଳା, ଦକ୍ଷିଣରେ ଶ୍ରୀଲୋକନାଥ ମହାଦେବ ଓ ଐଶାନ୍ୟ କୋଣରେ ଆଲାମଚଣ୍ଡୀଙ୍କ ଆସ୍ଥାନ ବିଦ୍ୟମାନ । ପୁନଶ୍ଚ ତୃତୀୟ ଆବରଣ ଅର୍ଥାତ୍ ଶଙ୍ଖର ଅଗ୍ରଭାଗରେ ବିଜେ କରିଛନ୍ତି ଶ୍ରୀନୀଳକଣ୍ଠ ମହାଦେବ । ଏହି ତୃତୀୟ ଆବରଣ ସ୍ଥିତ ଶଙ୍ଖନାଭିମଣ୍ଡଳର ରକ୍ଷାକର୍ତ୍ତା ଭାବରେ ଜାଗ୍ରତ ପ୍ରହରୀ ସଦୃଶ ଅଷ୍ଟଶକ୍ତି ବିଦ୍ୟମାନ । ଶାସ୍ତ୍ରରେ ଉଲ୍ଲେଖ ଅଛି -

'ମଙ୍ଗଳା ବଟମୂଳେତୁ ପଶ୍ଚିମେ ବିମଳା ତଥା,
ଶଙ୍ଖସ୍ୟ ପୂର୍ବଭାଗେତୁ ସଂସ୍ଥିତା ସର୍ବ ମଙ୍ଗଳା ।
ଅର୍ଦ୍ଧାସନୀ ତଥା ଲମ୍ବା କୁବେର ଦିଶି ସଂସ୍ଥିତା,
କାଳରାତ୍ରୀ ଦକ୍ଷିଣସ୍ୟା ପୂର୍ବସ୍ୟାନ୍ତୁ ମରୀଚିକା ।
କାଳରାତ୍ୟାସ୍ତଥା ପଶ୍ଚାତ୍ ଚଣ୍ଡରୂପା ବ୍ୟବସ୍ଥିତା,
ଏତାଭିରୁଗ୍ ରୂପାଭିଃ ଶକ୍ତିଭିଃ ପରିରକ୍ଷିତମ୍ ।'
(ସ୍କନ୍ଦପୁରାଣ - ପୁରୁଷୋତ୍ତମ ମହାତ୍ମ୍ୟ)

ପୁନଶ୍ଚ, ତନ୍ତ୍ରଶାସ୍ତ୍ର ସିଦ୍ଧାନ୍ତାନୁସାରେ, ଶଙ୍ଖନାଭିମଣ୍ଡଳ ସପ୍ତଆବରଣ ମଧ୍ୟରେ ଅବସ୍ଥିତ । ଏଣୁ ନିଃସନ୍ଦେହରେ କୁହାଯାଇ ପାରେ ଯେ, ସମସ୍ତ ପ୍ରକାର ରାଜକୀୟ ପରିବେଶ ମଧ୍ୟରେ, ଶଙ୍ଖାକୃତି ପଞ୍ଚକ୍ରୋଶ ପରିମିତ, ନଦୀ, ନୀଳପାରାବାର ପରିବେଷ୍ଟିତ ଦ୍ୱୀପାଞ୍ଚଳ ସଦୃଶ ନୀଳସୁନ୍ଦର ପର୍ବତ ହିଁ ଶଙ୍ଖକ୍ଷେତ୍ର । ଏହି ପୁଣ୍ୟକ୍ଷେତ୍ରରେ, ଆବହମାନ କାଳରୁ ଅନେକ ଦେବଦେବୀ, କଳ୍ପବୃକ୍ଷ, ମୁନିଋଷି ଅଧ୍ୟୁଷିତ ମଠ ଓ ଆଶ୍ରମ ତଥା ସର୍ବୋପରି ଶ୍ରୀଜଗନ୍ନାଥଙ୍କ ଭବ୍ୟ ମନ୍ଦିରଦ୍ୱାରା ଅତୀତ ବିଶ୍ୱଐତିହ୍ୟର, ଗର୍ବ ଓ ଗୌରବର ବାର୍ତ୍ତାବହ ରୂପେ ସ୍ମୃତିଚାରଣ କରୁଛି ।

ବିଶ୍ୱସ୍ରଷ୍ଟାଙ୍କ ସୃଷ୍ଟି ସାମ୍ରାଜ୍ୟ ମଧ୍ୟରେ ସାଧାରଣତଃ ତୀର୍ଥକ୍ଷେତ୍ରମାନଙ୍କର ମହାତ୍ମ୍ୟ ନାମକରଣ ମାଧ୍ୟମରେ ପରିସ୍ଫୁଟିତ ହୋଇଥାଏ । ତାଦୃଶ ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ ଶଙ୍ଖକ୍ଷେତ୍ର ଶ୍ରୀନୀଳଗିରି 'ମର୍ତ୍ତ୍ୟବୈକୁଣ୍ଠ' ନାମରେ ମହିମା ମଣ୍ଡିତ । ଏହି ପୁରୋଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କୁ ବୈକୁଣ୍ଠାଧିପତି ଓ ବୈକୁଣ୍ଠ ବିହାରୀ ନାମରେ ନାମିତ କରାଯାଇଅଛି । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ବୈକୁଣ୍ଠ ଶବ୍ଦ ଓ ସ୍ଥାନ ଓ ଜ୍ଞାନର ପ୍ରତୀକ । ବିକୁଣ୍ଠ ଶବ୍ଦର ଅର୍ଥ ହେଉଛି ଜୀବ । ନାମ ଭେଦରେ, ଯାହାଙ୍କର କୌଣସି କାର୍ଯ୍ୟରେ କୁଣ୍ଠାବୋଧ କିମ୍ବା ନାଶ ନଥାଏ ସେ ହିଁ ବୈକୁଣ୍ଠ ପଦବାଚ୍ୟ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଶ୍ରୀଜଗନ୍ନାଥ ଅଖିଳ ବିଶ୍ୱବାସୀ ଜୀବଗଣଙ୍କୁ ଅକୁଣ୍ଠ ଚିତ୍ତରେ ଚତୁଃବର୍ଗ ଫଳ ଏବଂ ଜ୍ଞାନ ଦାନ କରିଥାନ୍ତି । ସ୍ଥାନ ଭେଦରେ ଦେଖିବାକୁ ଗଲେ, ଯେକେହି ହେଉନା କାହିଁକି ଶଙ୍ଖକ୍ଷେତ୍ର ନୀଳାଚଳକୁ ଦର୍ଶନାର୍ଥେ ଯିବା ନିମିତ୍ତ କୁଣ୍ଠାବୋଧ କରିନଥାଏ । ସେହିପରି ଶଙ୍ଖକ୍ଷେତ୍ର, ଆଗନ୍ତୁକ ଜୀବଗଣଙ୍କୁ ଅକୁଣ୍ଠ ଭାବେ ସ୍ନେହ ପ୍ରଦାନ କରିବାରେ ଦ୍ୱିଧା ପ୍ରକାଶ କରିନଥାଏ । ତେଣୁ **ନିଃସନ୍ଦେହରେ କୁହାଯାଇପାରେ ଯେ, ଶଙ୍ଖକ୍ଷେତ୍ର ହିଁ ବୈକୁଣ୍ଠ ଏବଂ ଶ୍ରୀଜଗନ୍ନାଥ ହିଁ ବୈକୁଣ୍ଠାଧିପତି ।** ତେଣୁ ଯଥାର୍ଥରେ କୁହାଯାଇଛି, 'ବିଗତା କୁଣ୍ଠାନାଶୋଽସ୍ୟ, ବୈକୁଣ୍ଠ ଜ୍ଞାନ ସ୍ଥାନଂବାପ୍ତି' ।

ପୁରାଣଶାସ୍ତ୍ର ସିଦ୍ଧାନ୍ତରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ ଶଙ୍ଖକ୍ଷେତ୍ର ହେଉଛି ସୃଷ୍ଟି ସ୍ଥିତି, ସଂହାରର ଆଧାର କ୍ଷେତ୍ର । ଯୁଗ ପ୍ରଳୟରେ ସୁଦ୍ଧା ଏ କ୍ଷେତ୍ରର ସ୍ଥିତି ଅପରିବର୍ତ୍ତିତ । ପୁରାଣ ସିଦ୍ଧାନ୍ତରେ ମହାପ୍ରଳୟ ସମୟରେ ଏହି କ୍ଷେତ୍ରସ୍ଥ ଅକ୍ଷୟବଟ ପ୍ରଳୟ ପୟୋଧି ଜଳରେ ମଗ୍ନ ହୋଇନଥିଲା । ଏହି ବୃକ୍ଷ ମୂଳରେ ମାର୍କଣ୍ଡେୟ ଋଷି ଶ୍ରୀନାରାୟଣଙ୍କୁ ଦର୍ଶନ କରିଥିଲେ । ତ୍ରେତୟା ଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ଏହିକ୍ଷେତ୍ରରେ ଶ୍ରୀଲୋକନାଥ ମହାଦେବଙ୍କୁ ସ୍ଥାପନ କରିଥିଲେ ଯାହାଙ୍କ ମନ୍ଦିର ଅଦ୍ୟାପି ଶ୍ରୀମନ୍ଦିରର ପଶ୍ଚିମ ଦିଗରେ





ଦୁଇ କିଲୋମିଟର ଦୂରରେ ବିଦ୍ୟମାନ । ଶ୍ରୀରାମଚନ୍ଦ୍ର ପରମଧାମ ଯିବାର ଅବବ୍ୟହିତ ପୂର୍ବରୁ ରାକ୍ଷସରାଜ ବିଭୀଷଣଙ୍କୁ କହିଥିଲେ, 'ହେରାକ୍ଷାସେନ୍ଦ୍ର, ଆମ ଇକ୍ଷ୍ୱାକୁ କୂଳର ଆରାଧ ଦେବତା ହେଉଛନ୍ତି ଶ୍ରୀଜଗନ୍ନାଥ ଯାହାଙ୍କୁ ଇନ୍ଦ୍ରାଦି ଦେବଗଣ ପୂଜାରାଧନା କରିଥାନ୍ତି । ତୁମେ ତାଙ୍କ ସେବାରେ ନିଜକୁ ନିୟୋଜିତ କର । ଶାସ୍ତ୍ରରେ ଅଛି -

'କିଂ ଚାନ୍ୟଦ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାବଳ
ଆରାଧାୟ ଜଗନ୍ନାଥ ମିକ୍ଷ୍ୱାକୁ କୁଳ ଦୈବତମ୍
ଆରାଧନୀୟା ମନଶ ଦେବୈରିକ୍ଷ ସବା ସବୈଃ ।'
(ବାଲ୍ମିକୀ ରାମାୟଣ - ଉତ୍ତରାକାଣ୍ଡ)

ବାମଦେବ ସଂହିତା ସିଦ୍ଧାନ୍ତରୁ ଜଣାଯାଏ, ଶ୍ରୀରାମଚନ୍ଦ୍ର ସ୍ୱଧାମ ଗମନ ପୂର୍ବରୁ, ପ୍ରିୟଭକ୍ତ ହନୁମାନଙ୍କୁ ଆଶ୍ୱାସନା ଦେଇ କହିଥିଲେ, 'ତୁ ଚିରଂଜୀବୀ ହୁଅ' । ଉତ୍କଳ ପ୍ରଦେଶର ପୁରୁଷୋତ୍ତମ କ୍ଷେତ୍ର ହିଁ ମୋର ସ୍ୱଧାମ । ତୁମେ ସେଠାରେ କୁମୁଦ ରୂପରେ ବାସ କର । ମୁଁ ସେଠାକୁ ଯିବି । ସେଠାରେ ତୁମେ ମୋତେ ଶ୍ରୀଜଗନ୍ନାଥଙ୍କ ରୂପରେ ଦର୍ଶନ କରିବ । ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ ଦିବ୍ୟଲୀଳାବସାନ ଅନ୍ତେ, ତଦୀୟ ଆଶ୍ରିତ ପଞ୍ଚପାଣ୍ଡବ, କଳ୍ପବଟକୁ ପୁରୁଷୋତ୍ତମ କ୍ଷେତ୍ରରେ ସ୍ଥାପନ କରିଥିଲେ । କଳ୍ପବଟକୁ ଆଶ୍ରୟ କରି ପଞ୍ଚପାଣ୍ଡବ ଭୁଲି ଯାଇଥିଲେ ବିଗତ ଦିନର ଶୋକତାପ । ଏହି ଘୋର କଳିଯୁଗରେ, ବିଭିନ୍ନ ଧର୍ମ ପ୍ରଚାରକ ଗଣ ଯଥା- ନାନକ, ରାମାନୁଜ, ମାଧ୍ୱାଚାର୍ଯ୍ୟ, ନିମ୍ବାର୍କ, ଆଦିଶଙ୍କରାଚାର୍ଯ୍ୟ, ପ୍ରମୁଖ ଶ୍ରୀଜଗନ୍ନାଥଙ୍କ ନାମ ଭଜନରେ ଆତ୍ମବିଭୋର ହୋଇଛନ୍ତି । ଅନେକ ପାପୀ ଶ୍ରୀଜଗନ୍ନାଥଙ୍କ କେବଳ ନାମ ଭଜନଦ୍ୱାରା, ପାପପଙ୍କିଳ ସଂସାର ସାଗରରୁ ମୁକ୍ତି ପାଇଛନ୍ତି । ଏହି ସୂକ୍ଷ୍ମ ଆଲୋଚନାରୁ ହୃଦ୍‌ବୋଧ ହୁଏ ଯେ, ଶ୍ରୀଜଗନ୍ନାଥ ହେଉଛନ୍ତି ଅବତାରୀ ପୂର୍ଣ୍ଣବ୍ରହ୍ମ । ସେ ନାନାଦି ଅବତାରରେ ଅବତୀର୍ଣ୍ଣ ହୋଇଛନ୍ତି ଏହି ଭୂମଣ୍ଡଳରେ ଏବଂ ଦିବ୍ୟଲୀଳାବସାନ ଅନ୍ତେ, ଯୁଗ ଭେଦରେ ପ୍ରତ୍ୟାବର୍ତ୍ତନ କରିଛନ୍ତି ଏହି ଶଙ୍ଖକ୍ଷେତ୍ରକୁ । ଶ୍ରୀଜଗନ୍ନାଥ ମାନବୀୟ ଲୀଳା ପ୍ରକଟ କରୁଥିଲେ ହେଁ, ତାଙ୍କର ଶରୀର ହେଉଛି ଦିବ୍ୟସତ୍ତା ବା ଚିନ୍ମୟ । ସୌଦାମିନୀ ଗଗନ ମାର୍ଗରେ ଚଳପ୍ରଚଳ ସଦୃଶ ଶ୍ରୀଜଗନ୍ନାଥ ଯୁଗେ ଯୁଗେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ । ତେଣୁ ଶଙ୍ଖକ୍ଷେତ୍ର ହିଁ ଯଥାର୍ଥରେ 'ମର୍ତ୍ତ୍ୟବୈକୁଣ୍ଠ' ।

'ମର୍ତ୍ତ୍ୟବୈକୁଣ୍ଠ' ଶଙ୍ଖକ୍ଷେତ୍ର ଧାମରେ ଯୁଗେ ଯୁଗେ ଅମର୍ତ୍ତ ଲାବଣ୍ୟନିଧିର ଅଧିଦେବତା ଶ୍ରୀଜଗନ୍ନାଥ ଅଧିଷ୍ଠିତ ଓ ଆରାଧିତ । ମାନବ ସଂସ୍କୃତି ଗତିଶୀଳ ଓ ପରିବର୍ତ୍ତନଶୀଳ । ଶ୍ରୀଜଗନ୍ନାଥଙ୍କ ଦିବ୍ୟଲୀଳା ମାନବୀୟ । ଏହି ଦୃଷ୍ଟିରୁ, ସଂସ୍କୃତିର ଗତାନୁଗତିକ ପ୍ରବହମାନ ଧାରାରେ ଶ୍ରୀଜଗନ୍ନାଥ ହୋଇଛନ୍ତି ପରିବର୍ତ୍ତନଶୀଳ । ତାଙ୍କ ନିକଟରେ ଛୁଆଁ, ଅଛୁଆଁ, ସାନବଡ଼ର ଭେଦାଭେଦ ଭାବ ନାହିଁ । ତେଣୁ ସେ ସଂସ୍କୃତିର ପ୍ରବହମାନ ଧାରାରେ କେତେବେଳେ ଜଡ଼ିତ ହୋଇଯାଇଛନ୍ତି ଶବର ସଂସ୍କୃତିରେ ତ କେତେବେଳେ ଅନ୍ୟାନ୍ୟ ଧର୍ମ ଓ ସଂସ୍କୃତିରେ । ଭାରତୀୟ ପୁରାଣ, ଶାସ୍ତ୍ର, ନ୍ୟାୟ, ଦର୍ଶନ, ମୀମାଂସା, ବେଦ, ଉପନିଷଦ ତଥା ଆଧୁନିକ ଯୁଗ ସାହିତ୍ୟରେ କବି, କୋବିଦ, ଗବେଷକ, ଐତିହାସିକ ଓ ଲେଖକସମୂହ ଶଙ୍ଖକ୍ଷେତ୍ରର ଆରାଧ ଦାରୁଦେବତା ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ସନ୍ଧାନରେ ଭାବ ବିହ୍ୱଳିତ । କ୍ଷେତ୍ର ପାଞ୍ଚକ୍ରୋଶ, ତତ୍ତ୍ୱ ଅନେକ । ଏହାର କୂଳ, କିନାରା ଖୋଜି ପାଇବା ଦୁରୂହ ବ୍ୟାପାର । ଶ୍ରୀଜଗନ୍ନାଥ ସ୍ୱୟଂ ରହସ୍ୟମୟ । ତେଣୁ ଯଥାର୍ଥରେ କୁହାଯାଇଛି - 'ସର୍ବରହସ୍ୟ ପୁରୁଷୋତ୍ତମସ୍ୟ, ଦେବାଃ ନଜାନନ୍ତି କୁତଃ ମନୁଷ୍ୟା ।' ଅନ୍ୟପକ୍ଷରେ ଧର୍ମରତତ୍ତ୍ୱ ଅତ୍ୟନ୍ତ ନିଗୂଢ଼ । ତେଣୁ ପୂର୍ବସୁରୀମାନଙ୍କ ପଦାଙ୍କ ଅନୁସରଣ ଏକାନ୍ତ ଶ୍ରେୟସ୍କର । ଶାସ୍ତ୍ରରେ ଉଲ୍ଲେଖ ଅଛି - 'ଧର୍ମସ୍ୟ ତତ୍ତ୍ୱ ନିହିତ ଗୁହାୟଂ, ମହାଜନ ଯେନ ଗତସ୍ୟ ପନ୍ଥା ।'

ସମୟକ୍ରମେ ଶଙ୍ଖକ୍ଷେତ୍ରର ଆରାଧ ଦେବତାଙ୍କ ପ୍ରେମ ଡୋରିରେ ବାନ୍ଧି ହୋଇଯାଇଛନ୍ତି, ଦେଶ, ବିଦେଶର ବିଭିନ୍ନ ଧର୍ମାବଲମ୍ବୀ ତଥା ମହାପୁରୁଷଗଣ । ସେମାନେ ବିଭିନ୍ନ ସମୟରେ ଶଙ୍ଖକ୍ଷେତ୍ରକୁ ଆସି, ସ୍ୱଧର୍ମରେ ଶ୍ରୀଜଗନ୍ନାଥଙ୍କୁ ଆପଣାର କରିନେବାକୁ ମନସ୍ଥ କରିଥିଲେ । କିନ୍ତୁ ସେମାନଙ୍କ ଭାବନା ଭାବନାରେ ରହିଗଲା । ଶ୍ରୀଜଗନ୍ନାଥଙ୍କର ଅନ୍ୟନାମ ଭାବଗ୍ରାହୀ । ତାଙ୍କର ଭାବ ସମୁଦ୍ରରେ ସମସ୍ତେ ନିମଜ୍ଜିତ ହୋଇଗଲେ । ଯେପରି ନଦୀ ସମୂହ ସମୁଦ୍ରାଭିମୁଖେ ଗମନ କରି, ଶେଷରେ ସମୁଦ୍ର ସହିତ ମିଳିତ ହୋଇ, ନିଜର ସ୍ୱନାମ, ଗୁଣକୁ ପାଶୋରି ଯାଇଥାନ୍ତି । ଶ୍ରୀମଦ୍ ଭାଗବତରେ ଉଲ୍ଲେଖ ଅଛି -

'ଦେଖ ଏ ଯେତେ ନଦନଦୀ, ସମସ୍ତେ ମିଳନ୍ତି ଜଳଧି ।
ଲବଣ ଜଳେ ସେ ମିଶନ୍ତି, ସ୍ୱନାମ ଗୁଣ ପାଶୋରନ୍ତି ।।'

ମନେହୁଏ ଯେ, ମାନବ ସଂସ୍କୃତିର ଗତାନୁଗତିକ ଭାବଧାରାରେ ଜଡ଼ିତ ହୋଇଯାଇଛନ୍ତି ଶ୍ରୀଜଗନ୍ନାଥ । ତାଦୃଶ ଶ୍ରୀଜଗନ୍ନାଥଙ୍କ ମାନବୀୟ ଲୀଳା ମଧରେ ଜଡ଼ିତ ହୋଇଯାଇଛନ୍ତି, ବହୁବିଶିଷ୍ଟ ଧର୍ମାଚାର୍ଯ୍ୟ, ଭକ୍ତ ତଥା ସାଧାରଣ ମାନବ । ଭାରତ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର । ଭାରତୀୟ ଶାସନ ପଦ୍ଧତିରେ କୌଣସି ଧର୍ମପ୍ରତି ଅସୂୟା ଭାବ ନାହିଁ । ଶ୍ରୀଜଗନ୍ନାଥଙ୍କ ମୌଳିକ ନୀତି ମଧ ଏତାଦୃଶ । ଶ୍ରୀଜଗନ୍ନାଥ ହିଁ ଭାରତୀୟ ଜନଜୀବନର ନୀତିନିର୍ଦ୍ଧାରକ । ତେଣୁ ସେ ଶଙ୍ଖକ୍ଷେତ୍ର ବା କମ୍ଭୁକଟକର ରାଜାଭାବେ ବିଶ୍ୱବନ୍ଦନୀୟ । ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣରେ ଶ୍ରଦ୍ଧା ଓ ବିଶ୍ୱାସ ଥିଲେ, ସେ ଚତୁଃବର୍ଗ ଫଳ ପ୍ରଦାନ କରିଥାନ୍ତି । କବିଙ୍କ ଭାଷାରେ ଶ୍ରୀଚରଣରେ ଶ୍ରଦ୍ଧା ଓ ବିଶ୍ୱାସ ଥିଲେ, ସେ ଚତୁଃବର୍ଗ ଫଳପ୍ରଦାନ କରିଥାନ୍ତି । କବିଙ୍କ ଭାଷାରେ -

'ସେ କମ୍ଭୁକଟକ ରାଜା ନାମ ଜଗନ୍ନାଥ,
ଚାରିବର୍ଗେ ଚଉବର୍ଗ ଦେବାକୁ ସମର୍ଥ ହେ ।'
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)





କମ୍ବୁକଟକର ରାଜା ଭାବରେ ଶ୍ରୀଜଗନ୍ନାଥ ବିଶ୍ୱଜନ ମନୋରଞ୍ଜନାର୍ଥେ ଭିଆଇ ଅଛନ୍ତି ବାରମାସକୁ ତେର ଯାତ୍ରା । ତନ୍ମଧ୍ୟରୁ ଘୋଷଯାତ୍ରା ଅନ୍ୟତମ । ଏହି ପବିତ୍ର ଯାତ୍ରା ମାନବୀୟ ସଂସ୍କୃତିର କ୍ରମବିବର୍ତ୍ତନ ଧାରାରେ ବିଭିନ୍ନ ଧର୍ମ ମଧ ଦେଇ ପ୍ରଚଳିତ ହୋଇ ଆସୁଥିଲେ ହେଁ ମୂଳ ସଂସ୍କୃତିରୁ ବିଚ୍ୟୁତ ହୋଇନାହିଁ । ଏହି ଯାତ୍ରା ଶବର ସଂସ୍କୃତିରୁ ଜନ୍ମନେଇ ବୈଦିକ ଶାସ୍ତ୍ରୀୟ ବିଧିରେ ପାଳନ ହେଉଥିବା ଅନୁମିତ ହୁଏ । ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ, ଦେଶ, ବିଦେଶ ନିର୍ବିଶେଷରେ ଘୋଷଯାତ୍ରା ଏକ ମହାମିଳନ ପର୍ବ ।

ଘୋଷଯାତ୍ରାର ପ୍ରାରମ୍ଭିକ ଦିବସ ହେଲା ସ୍ନାନପୂର୍ଣ୍ଣିମା ବା ଜ୍ୟେଷ୍ଠ ପୂର୍ଣ୍ଣିମା । ଏହି ଦିନ ଦାରୁବିଗ୍ରହ ଚତୁର୍ଦ୍ଧାମୂର୍ତ୍ତି ଆମନ୍ତ୍ରିତ ହୋଇଥାନ୍ତି ସ୍ନାନମଣ୍ଡପକୁ । ସେଠାରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଅଷ୍ଟୋତ୍ତର ଶତ ସ୍ୱର୍ଣ୍ଣକୂପ ଜଳରେ ମହାସ୍ନାନ କରାଯାଇଥାଏ । ସ୍ନାନ ଜନିତ ଚତୁର୍ଦ୍ଧାମୂର୍ତ୍ତିଙ୍କ ଶରୀର ହୁଏ ଅସୁସ୍ଥ । ଏଠାରେ ଗୋପନୀୟ ସେବା ଓ ଶୁଶ୍ରୁଷାଦ୍ୱାରା ଠାକୁର ଆରୋଗ୍ୟ ଲାଭ କରନ୍ତି ପନ୍ଦର ଦିନ ଅନ୍ତରରେ । ଆଷାଢ଼ ଶୁକ୍ଳପକ୍ଷ ପ୍ରତିପଦା ଦିନ ଶ୍ରୀଅଙ୍ଗ ସଂସ୍କାର କରାଯାଏ ନେତ୍ରୋତ୍ସବ ଅବସରରେ ଚତୁର୍ଦ୍ଧାମୂର୍ତ୍ତି ଭକ୍ତଗଣଙ୍କୁ ଦର୍ଶନ ଦେଇଥାନ୍ତି । ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ସ୍ୱୟଂ ଚତୁର୍ଦ୍ଧାମୂର୍ତ୍ତି ବିଜେ ହୋଇ ଭକ୍ତଗଣଙ୍କୁ ଦର୍ଶନ ଦେଇଥାନ୍ତି । ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ସ୍ୱୟଂ ଚତୁର୍ଦ୍ଧାମୂର୍ତ୍ତି ବିଜେ ହୁଅନ୍ତି ବଡ଼ଦାଣ୍ଡରେ ଘୋଷଯାତ୍ରା ନିମିତ୍ତ । ଶାସ୍ତ୍ରରେ ଉଲ୍ଲେଖ ଅଛି -

'ଆଷାଢ଼ସ୍ୟ ମଳପକ୍ଷେ, ଦ୍ୱିତୀୟା ପୁଷ୍ୟା ସଂଯୁତେ
ଚରାଚର ଓ ହିତାର୍ଥାୟ ଘୋଷଯାତ୍ରା ବିଧିୟତେ ।
(ଇନ୍ଦ୍ର ନୀଳମଣି ପୁରାଣ)

ବିଶ୍ୱବନ୍ଦ୍ୟ ଠାକୁର ଶ୍ରୀଜଗନ୍ନାଥ ଭ୍ରାତା ଓ ଭଗ୍ନୀଙ୍କୁ ସଙ୍ଗରେ ଘେନି ବିଜେ କରନ୍ତି ମଣିମାଣିକ୍ୟ ବିଜଡ଼ିତ ନନ୍ଦିଘୋଷ, ତାଳଧ୍ୱଜ ଓ ଦେବଦଳନ ରଥତ୍ରୟ ଉପରେ ମାଧୁର୍ଯ୍ୟ ଲୀଳା ପ୍ରକଟ କରିବାକୁ । ଛାଡ଼ିଆସନ୍ତି ପ୍ରାଣପ୍ରତିମ ଲକ୍ଷ୍ମୀଙ୍କ ଆକର୍ଷଣ ଓ ଶଙ୍ଖନାଭି ମଣ୍ଡଳର ଐଶ୍ୱର୍ଯ୍ୟ ଲୀଳାକୁ । ପତିତ ଉଦ୍ଧାରଣ ନିମିତ୍ତ ପତିତ ପାବନ ବାନା ଉଡ଼ାଇ ଆରୋହଣ କରନ୍ତି ରଥରେ । ଶ୍ରୀଜଗନ୍ନାଥ ହେଉଛନ୍ତି ଦୟାର ମୂର୍ତ୍ତିବନ୍ତ ପ୍ରତୀକ । ତାଙ୍କର ଚକ୍ଷୁ ଚକ୍ରାକାର, ବାହୁଶଗଡ଼ ଦଣ୍ଡା ସଦୃଶ । କବିଙ୍କ ଭାଷାରେ-

'ମୂର୍ଚ୍ଛି ଲୋଳାଏଳା ନୀଳାଚଳ ଲୀଳା ଇଚ୍ଛିତ ପାମର ସଂସର୍ଗ
ଖରାବରଷାରେ ଧରା ରହିବାରେ ଦାଣ୍ଡେ ଭରାଭର ସରାଗ
ଗ୍ରନ୍ଥ କର୍ତ୍ତାର, ଉଦ୍ଧାର ସେ ଜୟ ସଂକଟ,
ଚକାଚକ୍ଷୁ ଚକାବାହୁ ଦଣ୍ଡାଲୋକ ଧରି ପ୍ରକଟାନ୍ତି ଧପଟ ।'
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର)

ଶଙ୍ଖକ୍ଷେତ୍ରସ୍ଥ ଶତଦଳ କମଳ ଉପରେ ପ୍ରତିଷ୍ଠିତ ଶ୍ରୀମନ୍ଦିରର ରତ୍ନସିଂହାସନ ମଧ୍ୟରେ ଚକାପକାଇ ବସିଥିବା ଇନ୍ଦ୍ର ନୀଳମଣି ସମ ଚକାନୟନ ନନ୍ଦିଘୋଷ ରଥରେ ଆରୋହଣ କରି ସାଧୁ, ସନ୍ଥମାନଙ୍କ ପାତକ ବିନାଶ କରିଥାନ୍ତି । ନନ୍ଦିଘୋଷ ରଥର ଷଟଦଶ ଚକ୍ର ଚନ୍ଦନଘୋଷ ଭକ୍ତର ମନ କନ୍ଦରରେ ଭରିଦିଏ ଶାଶ୍ୱତ ପ୍ରେରଣା । କବିଙ୍କ ଭାଷାରେ -

'ମେଘକାଚକ ରତ୍ନାସନ ଚକା, ଚକାନୟନ ନ ତକାଇ ଧକ୍କା
ପକାନ୍ତି ଏ କାଚକୀୟ ପାତକେ, ଷଟଦଶ ଚକ୍ର ଚକ୍ରଙ୍କ ଡାକେ
ଏମନ୍ତ ବିହାର, ଗ୍ରନ୍ଥକର୍ତ୍ତା ଚିନ୍ତା ପଦ୍ମ ନିହାର ।'
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର)

ଶ୍ରୀଜଗନ୍ନାଥ ହେଉଛନ୍ତି ଜଳ, ସ୍ଥଳ, ଅନ୍ତରୀକ୍ଷର ତ୍ରାଣକର୍ତ୍ତା । ସେ ଦେବଦେବ ମହାଦେବଙ୍କ ହସ୍ତରୁ ବ୍ରହ୍ମ କପାଳକୁ ମୋଚନ କରିଥିଲେ ଶଙ୍ଖକ୍ଷେତ୍ରରେ । ସେହି ପତିତ ଉଦ୍ଧାରଣ, ଶରଣରକ୍ଷଣବାନା, ଶ୍ରୀଜଗନ୍ନାଥ ଆଷାଢ଼ ମାସରେ, ବଡ଼ଦାଣ୍ଡରେ ରଥଯାତ୍ରା ନିମିତ୍ତ ଉତ୍ସୁକତାର ସହ ବାହାରି ଆସନ୍ତି ଶ୍ରୀମନ୍ଦିର ମଧ୍ୟରୁ । ଐଶ୍ୱର୍ଯ୍ୟ ଲୀଳା ପରିହାର କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମାଧୁର୍ଯ୍ୟ ଲୀଳା ସଂରଚନା କରିବା ମୂଳରେ ରହିଛି ମହାନ୍ ଆଦର୍ଶ । ସେହି ଆଦର୍ଶ ହେଲା ମମତା । ବିଶେଷତଃ ଶଙ୍ଖକ୍ଷେତ୍ରସ୍ଥ ଯଜ୍ଞବେଦୀ, ସ୍ନାନବେଦୀ ଓ ନିଳାଦ୍ରୀପ୍ରତି ଶ୍ରୀଜଗନ୍ନାଥଙ୍କ ଅଶେଷ ମମତା ପରିଲକ୍ଷିତ ହୋଇଥାଏ । ଯଜ୍ଞବେଦୀ ହେଉଛି, ଯାହାକି ଶ୍ରୀଗୁଣ୍ଡିଚା ମନ୍ଦିର ନାମରେ ଖ୍ୟାତ । ପୁରାଣ ଶାସ୍ତ୍ର ସିଦ୍ଧାନ୍ତରେ ଯଜ୍ଞବେଦୀ ହିଁ ଶ୍ରୀଜଗନ୍ନାଥଙ୍କର ଜନ୍ମସ୍ଥାନ । ଶାସ୍ତ୍ରମତରେ ଜ୍ୟେଷ୍ଠ ପୂର୍ଣ୍ଣିମାକୁ କୁହାଯାଏ ସ୍ନାନପୂର୍ଣ୍ଣିମା । ଏହିଦିନ ଚତୁର୍ଦ୍ଧାମୂର୍ତ୍ତି ଦାରୁରୂପରେ ଆବିର୍ଭାବ ହୋଇଥିଲେ ଯଜ୍ଞବେଦୀରେ । ଜନ୍ମୋତ୍ସବ ପାଳନ ମାନ୍ୟତାରେ, ସ୍ନାନ ପୂର୍ଣ୍ଣିମା ଦିବସରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଯେଉଁ ବେଦିକା ଉପରେ ମହାସ୍ନାନ କରାଯାଏ, ତାହା ହିଁ ସ୍ନାନବେଦୀ ବା ମହାବେଦୀ । ନିଳାଦ୍ରୀ ବା ଶ୍ରୀମନ୍ଦିର ହେଉଛି, ଶ୍ରୀଜଗନ୍ନାଥଙ୍କର ଐଶ୍ୱର୍ଯ୍ୟ ଲୀଳାକ୍ଷେତ୍ର । ଏଠାରେ ସେ ରାଜରାଜେଶ୍ୱର ପରମ୍ପରାରେ ତିନିଧୂପ ଓ ପାଞ୍ଚ ଅବକାଶ ରୀତିରେ ପ୍ରକଟ କରିଥାନ୍ତି । ଐଶ୍ୱର୍ଯ୍ୟ ଲୀଳା । ତେଣୁ ନିଳାଦ୍ରୀ ହେଉଛି ଶ୍ରୀଜଗନ୍ନାଥଙ୍କ ଅନ୍ନବ୍ୟଞ୍ଜନ ସ୍ଥାନ । ଦୁଷ୍ଟଦଳନ ଓ ସନ୍ଥ ପାଳନ ସକାଶେ ସେ ଦକ୍ଷିଣ ହସ୍ତରେ ଧାରଣ କରିଥାନ୍ତି ଅସ୍ତ୍ରରାଜ ସୁଦର୍ଶନଙ୍କୁ । ଏହି ଦୃଷ୍ଟିରୁ ସ୍ପଷ୍ଟ ପ୍ରତିଭାତ ହୁଏ ଯେ, ଶ୍ରୀଜଗନ୍ନାଥ ଅନ୍ନବ୍ୟଞ୍ଜନ ତ୍ୟାଗପୂର୍ବକ ଜନ୍ମସ୍ଥାନ ଓ ଜନ୍ମୋତ୍ସବ ମମତାରେ ଉଦ୍‌ବୁଦ୍ଧ ହୋଇ ବାହାରି ଆସନ୍ତି ଯଜ୍ଞବେଦୀ ଯାତ୍ରା ମାଧ୍ୟମରେ ପତିତ ଉଦ୍ଧାର ନିମିତ୍ତ । କବିଙ୍କ ଭାଷାରେ -

'ଯଜ୍ଞବେଦୀ ସ୍ନାନବେଦୀ ନିଳାଦ୍ରୀ ଭୋଜନ ଗାଦି
ଏଣୁ ସୁଦରଶନଙ୍କ ଧାମଟି ବାମେ ।
ବର୍ଜି ଅଶନ ଅନ୍ନର ସଜି ଯାହାକୁ ଦୁର୍ଣ୍ଣର
ଅର୍ଜିତ ଦୁରିତଚୟ ଛେଦନ କାମେ
ତାଙ୍କୁ ଦକ୍ଷ ମାର୍ଗେ ଧରନ୍ତି
ପ୍ରଭୁ ସେ ଗ୍ରନ୍ଥକର୍ତ୍ତାର ସର୍ବ ସମ୍ପତ୍ତି ।'
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର)





ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ସଂଯୋଗ ପଥ ହେଲା, ଶ୍ରୀମନ୍ଦିର ସମ୍ମୁଖସ୍ଥ ସିଂହଦ୍ୱାର ନିକଟରୁ ଶ୍ରୀଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ସୁବିସ୍ତୃତ ବଡ଼ଦାଣ୍ଡ । ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଯାତ୍ରାରମ୍ଭ ଏବଂ ଦଶମୀ ତିଥିରେ ବାହୁଡ଼ା ଯାତ୍ରା ମଧ୍ୟରେ ସପ୍ତଦିନ ଜନ୍ମଭୂମିରେ ଅବସ୍ଥାନ । ଇତ୍ୟବସରେ ଶ୍ରୀଜୀଉମାନଙ୍କୁ ଦର୍ଶନ କଲେ, ସାଧାରଣ ଦିବସ ଅପେକ୍ଷା ଦଶଗୁଣ ଅଧିକ ପୁଣ୍ୟ ମିଳିଥାଏ । ପୁନଶ୍ଚ ଦିବାଦର୍ଶନ ଅପେକ୍ଷା ରାତ୍ର ଦର୍ଶନ ଦଶଗୁଣ ଅଧିକ ଫଳ ପ୍ରଦାନ କରିଥାଏ । ଶାସ୍ତ୍ରରେ ଉଲ୍ଲେଖ ଅଛି -

'ନିଳାଦ୍ରୌ ଦଶବର୍ଷାଣି, ଗୁଣ୍ଡିଚା ମଣ୍ଡପେ ଦିନେ,<br>ଦିବାଦ୍ ଦର୍ଶନଂ ପୁଣ୍ୟଃ, ରାତ୍ରୌ ଦଶଗୁଣ ଭବେତ୍ ।'

ଶ୍ରୀଜଗନ୍ନାଥଙ୍କର ନନ୍ଦିଘୋଷ ରଥର ଚକ ଅଂଖ୍ୟା ହେଉଛି ୧୬ । ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥର ଚକ ସଂଖ୍ୟା ୧୪ ଏବଂ ଦେବୀ ସୁଭଦ୍ରାଙ୍କ ଦେବଦଳନ ରଥଚକ ସଂଖ୍ୟା ୧୨ । ମୋଟ ରଥତ୍ରୟର ଚକ ସଂଖ୍ୟା ହେଲା ୧୬+୧୪+୧୨=୪୨ । ଶ୍ରୀଗୁଣ୍ଡିଚା ଏବଂ ବାହୁଡ଼ା ଯାତ୍ରା ଯିବା ଆସିବାରେ ୪୨x୨=୮୪ ଥର ଚକ୍ରଚଳନ ଘଟୁଥିବା ଦୃଷ୍ଟେ ରଥଯାତ୍ରାକୁ ଚୌରାଙ୍ଗୀ ଚକ୍ରଚଳନ କୁହାଯାଏ । ଶ୍ରୀଜଗନ୍ନାଥଙ୍କ ହସ୍ତରେ ଶୋଭାପାଏ ପଞ୍ଚଜନ୍ୟ ଶଙ୍ଖ । ସ୍ୱଭାବେ ଶଙ୍ଖକ୍ଷେତ୍ର । ଅଥଚ ଶଙ୍ଖ ଶବ୍ଦ ଶୁଣାଯାଏ ନାହିଁ । ଶୁଣାଯାଏ ଜୟ ଶଙ୍ଖଧ୍ୱନି । ଏହି ଧ୍ୱନି ଭାସି ଆସେ ରଥତ୍ରୟଙ୍କ ଚକ୍ରଚଳନ ମଧ୍ୟରୁ । ଚାତକ ସଦୃଶ ଚାହିଁ ରହିଥିବା ଅଗଣିତ ବିଶ୍ୱବାସୀଙ୍କ ମନରେ ଆଣିଦିଏ ଅପୂର୍ବ ଆନନ୍ଦ ଓ ଉନ୍ମାଦନା, ଜୟ ଶଙ୍ଖଧ୍ୱନି । ଜୟ ଶଙ୍ଖଧ୍ୱନି ଶ୍ରବଣରେ ଉନ୍ମତ୍ତ ଭକ୍ତର ମନ କନ୍ଦରରୁ ସ୍ୱତଃ ଭାସିଆସେ, ମଣିମା, ମହାପ୍ରଭୁ, ମହାବାହୁ, କଳାଠାକୁର, ଚକାଡ଼ୋଳା, ପତିତପାବନ, ନନ୍ଦସୁତ, ବଳୀୟାରଭୁଜ, ଆଦି ଭାବଗର୍ଭକ ଆକୁଳ ସମ୍ବୋଧନ । ପ୍ରତିଦାନ ସ୍ୱରୂପ ଜୟଶଙ୍ଖ ଧ୍ୱନି ସ୍ପନ୍ଦିତ କରେ ବିଶ୍ୱପ୍ରାଣରେ, ବିଭୁପ୍ରେମ, ବିଶ୍ୱପ୍ରେମ, ବିଶ୍ୱଭ୍ରାତୃତ୍ୱ, ନିରହଙ୍କାର, ସାମ୍ୟ, ମୈତ୍ରୀ, କର୍ମପ୍ରତି ସଚେତନତା ଏବଂ ପ୍ରଗତିର ପ୍ରେରଣା । କବି ଲେଖିଛନ୍ତି -

'ଚତୁର୍ଦ୍ଦଶ ଦୁଇଦଶ ଷୋଡ଼ଶ, ଚକ୍ର ଚଳନ୍ତୁ ଜାତ ହେବା ଘୋଷ<br>ଶ୍ରୀଗୁଣ୍ଡିଚା ବାହୁଡ଼ାରେ ଚୌରାଶୀ, ଜୟଶଙ୍ଖ ପରିଯାଏ ଆଭାଷୀ<br>ଏମନ୍ତ ଉତ୍ସବ ଇଚ୍ଛିଯେ<br>ଦିବସ ରଜନୀ ଏ ଭାବ ଭଜନୀ ଗ୍ରନ୍ଥାକାର ହୋଇଅଛି ଯେ ।'<br>(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର)

ଉପସଂହାରରେ ବକ୍ତବ୍ୟ ଏହି ଯେ, ମର୍ତ୍ତ୍ୟବୈକୁଣ୍ଠ ଶଙ୍ଖକ୍ଷେତ୍ରେ ଜୟଶଙ୍ଖ ଧ୍ୱନିରେ ଧ୍ୱନିତ ଘୋଷଯାତ୍ରା ହେଉଛି ବିଶ୍ୱଐତିହ୍ୟର ମହାମିଳନ ପର୍ବ । ରଥତ୍ରୟର ଜୟଶଙ୍ଖ ଧ୍ୱନିର ନିନାଦ, ପ୍ରତିଧ୍ୱନିତ ହୋଇ ରହିଆସିଛି ଯୁଗ ଯୁଗ ଧରି ବିଶ୍ୱ ପ୍ରାଣରେ । ଏଥିରେ ନା ଅଛି ଜାତିଭେଦ, ନା ଧର୍ମଭେଦ, ନା ଅଛି ଉଚ୍ଚନୀଚ, ଛୁଆଁ ଅଛୁଆଁର ବାଛ ବିଚାର । କେବଳ ଅଛି ସାମ୍ୟ ଓ ମୈତ୍ରୀ । ଏପରି ଏକ ମହାନ୍ ଯାତ୍ରା ପରିଚାଳିତ କରୁଛନ୍ତି ସ୍ୱୟଂ ଶ୍ରୀଜଗନ୍ନାଥ । ତେଣୁ ସେ ହୋଇଛନ୍ତି ବଡ଼ଠାକୁର । ତାଙ୍କ ଶ୍ରୀଦେଉଳ ହୋଇଛି ବଡ଼ଦେଉଳ । ତାଙ୍କର ପୂଜକ ବଡ଼ପଣ୍ଡା । ଦାଣ୍ଡ ହୋଇଛି ବଡ଼ଦାଣ୍ଡ । ଅନ୍ନବ୍ୟଞ୍ଜନ ହୋଇଛି ମହାପ୍ରସାଦ, ସେ ପୁଣି ଅଭଡ଼ା, ଶୁଖିଗଲେ ହେଉଛି ନିର୍ମାଲ୍ୟ । ତଦୀୟ ରଥଯାତ୍ରା ହୋଇଛି, ଜାତି, ବର୍ଣ୍ଣ, ଧର୍ମ, ସମ୍ପ୍ରଦାୟ ନିର୍ବିଶେଷରେ ମହାମିଳନ ପର୍ବ । ଏହି ସମନ୍ୱୟ ଚେତନାର ପ୍ରତୀକ କଳାଠାକୁର ଯୁଗେ ଯୁଗେ ଅଖିଳ ବିଶ୍ୱବାସୀଙ୍କର ଗତିମୁକ୍ତିଦାତା ସଚ୍ଚିଦାନନ୍ଦ ବିଗ୍ରହ ।

**ସହାୟକ ଗ୍ରନ୍ଥସୂଚୀ**


୧. ଶ୍ରୀମନ୍ଦିର (ରଥଯାତ୍ରା ବିଶେଷାଙ୍କ) ୧୯୮୮

୨. ଉତ୍କଳ ପ୍ରସଙ୍ଗ (ରଥଯାତ୍ରା ବିଶେଷାଙ୍କ) ୨୦୦୨

୩. ଶ୍ରୀନୀଳମାଧବ ଇତିହାସ - ଶ୍ରୀ ବାସୁଦେବ ମିଶ୍ର

୪. ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର - ଯଦୁମଣି ମହାପାତ୍ର



ଚନ୍ଦନଖୁଣ୍ଟି<br>ପୋ: କଣ୍ଢଳ, ଦେବଗଡ଼








# ଶ୍ରୀଜଗନ୍ନାଥ ଓ ଗରୁଡ଼ସ୍ତମ୍ଭ

ଶ୍ରୀନିବାସ ଆଚାର୍ଯ୍ୟ

ଏହି ଅଖିଳ ବ୍ରହ୍ମାଣ୍ଡ ଦେବାଦେବୀମାନଙ୍କର ଏକ ଲୀଳାଭୂମି ରୂପେ ସୁପରିଚିତ । ସୃଷ୍ଟିର ଆଦ୍ୟକାଳରୁ ପରଂବ୍ରହ୍ମ ବ୍ରହ୍ମା ସୃଷ୍ଟିକର୍ତ୍ତା, ସ୍ୱୟଂବିଷ୍ଣୁ ପାଳନ କର୍ତ୍ତା ଓ ଦେବ ଦେବ ମହାଦେବ ସଂହାରକର୍ତ୍ତା ମର୍ତ୍ତ୍ୟମଣ୍ଡଳରେ ଜୀବଜଗତକୁ କ୍ରିୟାଶୀଳ କରାଇବା ପାଇଁ ସୃଷ୍ଟି କରିଛନ୍ତି ଶହ ଶହ ଦେବାଦେବୀ, ଯାହାକି ଆଜି ସେହିମାନେ ପବିତ୍ର ଭାରତ ଭୂମିରେ କାହିଁକି ସମଗ୍ର ବିଶ୍ୱଦରବାରରେ ଥିବା ମନ୍ଦିର, ମଣ୍ଡପ, ଗାଦୀ, ଆଶ୍ରମ ଓ ମଠମାନଙ୍କରେ ପୂଜା ପାଉଛନ୍ତି । ସନ୍ଥ ପାଳନ ଓ ଦୁଷ୍ଟଦଳନ ପାଇଁ ଦେବାଦେବୀମାନେ ବିଭିନ୍ନ ପ୍ରକାର ପାର୍ଶ୍ୱ ଦେବାଦେବୀ ଆବିର୍ଭାବ କରାଇଛନ୍ତି । ସେହି ପୀଠମାନଙ୍କ ମଧ୍ୟରେ ଜଗତରନାଥ ତଥା ଶ୍ରୀଜଗନ୍ନାଥଙ୍କ ପୀଠ ସମଗ୍ର ପୃଥିବୀରେ ଖ୍ୟାତି ଅର୍ଜନ କରିପାରିଛି । ଶ୍ରୀକ୍ଷେତ୍ରର ଏହି ପବିତ୍ର ମାଟିରେ ଶ୍ରୀଜଗନ୍ନାଥଙ୍କର ମହିମା ଓ ଗୁଣଗାରିମା ଯେପରି ରହସ୍ୟମୟ, ଠିକ୍ ସେପରି ଏଠାରେ ଥିବା ସମସ୍ତ ପାର୍ଶ୍ୱ ଦେବାଦେବୀଙ୍କ ମହତ୍ୱ ମଧ୍ୟ ବୈଚିତ୍ର୍ୟମୟ । ସେହି ଶତ ଶତ ପାର୍ଶ୍ୱ ଦେବାଦେବୀଙ୍କ ମଧ୍ୟରେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ, ପକ୍ଷୀରାଜ ଓ ସୁଦକ୍ଷ ବାହନ ଗରୁଡ଼ଙ୍କ ଆସ୍ଥାନ ସ୍ୱତନ୍ତ୍ର । ସେହି ସ୍ୱତନ୍ତ୍ର ଆସ୍ଥାନଧାରୀ ଏକାନ୍ତ ଆଜ୍ଞାବହ ବାହନ ଶ୍ରୀଗରୁଡ଼ଙ୍କର ମହିମା ଅତ୍ୟନ୍ତ ରହସ୍ୟମୟ ଓ ତାଙ୍କର ଶ୍ରୀଜଗନ୍ନାଥଙ୍କ ସହିତ ସଂପୃକ୍ତି ମଧ୍ୟ ନିବିଡ଼ତମ ।



ଭଗବାନ ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ନାମ ଅନ୍ୟତମ । ତାଙ୍କର ପ୍ରଧାନ ଭକ୍ତ ଶ୍ରୀଶଙ୍କରାଚାର୍ଯ୍ୟଙ୍କ (୭୮୮ରୁ ୮୨୦ ଖ୍ରୀଷ୍ଟାବ୍ଦ) ବିରଚିତ ବିଷ୍ଣୁ ସହସ୍ର ନାମ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ନାମ ଗୋଟିଏ ବୋଲି ପ୍ରାଧାନ୍ୟ ଦେଇଛନ୍ତି ।

'ତସ୍ୟ ଲୋକ ପ୍ରାଧାନସ୍ୟ ଜଗନ୍ନାଥସ୍ୟ ଭୂପତେ,
ବିଷ୍ଣୋନାମ ସହସ୍ରଂ ମେ ଶୃଣୁ ପାପଭୟା ପହମ୍ ।'

ଆଉମଧ୍ୟ ଶ୍ରୀମଦ୍‌ଭଗବତ ଗୀତାର ଦଶମ ଅଧ୍ୟାୟ ୧୫ ଶ୍ଳୋକରେ ପୁରୁଷୋତ୍ତମ ବୋଲି ସମ୍ବୋଧନ କରାଯାଇଅଛି ।

'ସ୍ୱୟମେବାତ୍ମନାତ୍ମାନଂ ନେତ୍‌ଥ ତ୍ୱଂ ପୁରୁଷୋତ୍ତମ
ଭୂତ ଭାବନା-ଭୂତେଶ ଦେବଦେବ ଜଗତପ୍‌ତେ ।'

ଉଦ୍ଧୃତ ଶ୍ଳୋକରୁ ପ୍ରତିପାଦିତ ହୁଏ ଯେ, ଶ୍ରୀକ୍ଷେତ୍ରସ୍ଥ ବଡ଼ଦେଉଳର ରତ୍ନ ସିଂହାସନରେ ବିରାଜିତ ଶ୍ରୀଜଗନ୍ନାଥ ସୃଷ୍ଟି ଆଦ୍ୟକାଳରୁ ବିଷ୍ଣୁ ରୂପେ ଆରାଧିତ ହେଉଛନ୍ତି । ସେ ହେଉଛନ୍ତି ଛପନ କୋଟି ଜୀବଜଗତର ପ୍ରାଣବିନ୍ଦୁ ତଥା ପ୍ରଭୁ ପରମେଶ୍ୱର, ଅଖିଳ ବ୍ରହ୍ମାଣ୍ଡର ପତି, ନିରାକାର, ପରଂବ୍ରହ୍ମ ଓ ଅସରନ୍ତି କୃପାର ଭଣ୍ଡାର । ଭଗବାନ ବିଷ୍ଣୁ ବିଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ ରୂପରେ ପବିତ୍ର ଭାରତ ଭୂମିରେ ଆବିର୍ଭୂତ ହୋଇଛନ୍ତି । ଏହି ଦେବଭୂମିରେ ଶ୍ରୀବିଷ୍ଣୁଙ୍କର ଚାରୋଟି ଧାମ ଅଛି ବୋଲି ଶାସ୍ତ୍ରାନୁମୋଦିତ । ଯାହାକି ଚତୁର୍ଦ୍ଧାମ ନାମରେ ଖ୍ୟାତ । ସେଗୁଡ଼ିକ ହେଲା- ୧) ବଦ୍ରିନାଥ ସ୍ନାନ ପୀଠ, ୨) ଦ୍ୱାରିକାନାଥ ବେଶଭୂଷା ପୀଠ, ୩) ଶ୍ରୀକ୍ଷେତ୍ରଧାମ ଭୋଜନ ପୀଠ ଓ ୪) ରାମେଶ୍ୱର ଧାମ ଶୟନ ପୀଠ । ଏହି ଚାରିଧାମ ମଧ୍ୟରେ ଶ୍ରୀକ୍ଷେତ୍ର ଶ୍ରେଷ୍ଠଧାମ ରୂପେ ପରିଚିତ । କାରଣ ଏହି ଧାମରେ ତ୍ରିଭୁବନପତି ଶ୍ରୀଜଗନ୍ନାଥଙ୍କର ନିତ୍ୟଲୀଳା ବିଦ୍ୟମାନ ।

ଶାସ୍ତ୍ରାନୁମୋଦିତ ପ୍ରତ୍ୟେକ ଦେବାଦେବୀଙ୍କର ନିର୍ଦ୍ଦିଷ୍ଟ ବାହନ ଅଛନ୍ତି । ଯଥା- ବ୍ରହ୍ମାଙ୍କର ପଦ୍ମ, ବିଷ୍ଣୁଙ୍କର ଗରୁଡ଼, ଶିବଙ୍କର ବୃଷଭ, ସରସ୍ୱତୀଙ୍କର ହଂସ, ଲକ୍ଷ୍ମୀଙ୍କର ପେଚକ, ଦୁର୍ଗାଙ୍କର ସିଂହ, ଗଣେଶଙ୍କର ମୂଷିକ, କାର୍ତ୍ତିକଙ୍କର ମୟୂର, ଇନ୍ଦ୍ରଙ୍କର ଐରାବତ, ଯମଙ୍କର ମଇଁଷି ଇତ୍ୟାଦି । ପ୍ରତ୍ୟେକ ଦେବାଦେବୀଙ୍କର ବାହନର ମୂର୍ତ୍ତି ମନ୍ଦିରର ଦ୍ୱାରଦେଶରେ ବିଦ୍ୟମାନ । ତଦ୍ୱାରା ତାହା କେଉଁ ମନ୍ଦିର ବାହନରୁ





ସୂଚିତ ହୋଇଥାଏ । ତେଣୁ ଶ୍ରୀଜଗନ୍ନାଥ ସାକ୍ଷାତ୍ ବିଷ୍ଣୁ ହୋଇଥିବାରୁ ସେଠାରେ ଗରୁଡ଼ ମୂର୍ତ୍ତି ରହିବା ସ୍ୱଭାବିକ । ପରମାରାଧ ପ୍ରଭୁ ଜଗନ୍ନାଥଙ୍କର ଏକାନ୍ତ ବିଶ୍ୱସ୍ତ ବାହନ ଗରୁଡ଼ଙ୍କର ତାଙ୍କ ସହିତ ରହିଛି ଚତୁର୍ଯୁଗରେ ଭକ୍ତପୂତ ନିବିଡ଼ ସମ୍ପର୍କ ।

ପରମ ପୂଜ୍ୟ ଗରୁଡ଼ଙ୍କର ଆବିର୍ଭାବ ଓ ବିଷ୍ଣୁଙ୍କ ବାହନ ହେବାର ଏକ ପୌରାରିକ କିମ୍ବଦନ୍ତୀ ମହାଭାରତର ଆଦିପର୍ବ ୨୩ ଅଧ୍ୟାୟ ୧୬ ଓ ୧୭ ଶ୍ଳୋକରେ ଲିପିବଦ୍ଧ ହୋଇଅଛି । ସତ୍ୟ ଯୁଗରେ ଦକ୍ଷ ପ୍ରଜାପତିଙ୍କର କଦ୍ରୁ ଓ ବିନତା ନାମରେ ଦୁଇଜଣ ସୁକନ୍ୟା ଥିଲେ । ପିତା ଦକ୍ଷ ପ୍ରଜାପତି ସେହି କନ୍ୟାଦ୍ୱୟଙ୍କୁ ମହର୍ଷି କଶ୍ୟପଙ୍କ ସହିତ ବିବାହ କରାଇଥିଲେ । ସ୍ୱାମୀ କଶ୍ୟପ ଦୁଇ ପତ୍ନୀଙ୍କ ଉପରେ ପ୍ରସନ୍ନ ହୋଇ ବର ମାଗିବାକୁ କହିଥିଲେ । କଦ୍ରୁ ଏକ ହଜାର ତେଜସ୍ୱୀ ନାଗପୁତ୍ର ବର ମାଗିଥିଲା ବେଳେ ବିନତା କଦ୍ରୁ ପୁତ୍ରଙ୍କଠାରୁ ଅଧିକ ବଳଶାଳୀ ଓ ତେଜସ୍ୱୀ ଦୁଇଟି ପୁତ୍ର ମାଗିଥିଲେ । କଶ୍ୟପ ଦୁଇ ପତ୍ନୀଙ୍କୁ ବର ପ୍ରଦାନ କରି ତପସ୍ୟା କରିବାକୁ ବନାନୁଗମନ କରିଥିଲେ । କିଛି ଦିନ ପରେ ଏକ ହଜାର ଅଣ୍ଡାରୁ କଦ୍ରୁଙ୍କର ନାଗପୁତ୍ର ଜନ୍ମ ହୋଇଥିଲେ ମଧ୍ୟ ବିନତାଙ୍କର ପୁତ୍ର ଜନ୍ମ ହୋଇନଥିଲେ । ବ୍ୟାକୁଳମନା ମାତା ବିନତା ଅଧୈର୍ଯ୍ୟ ହୋଇ ଗୋଟିଏ ଅଣ୍ଡାକୁ ଭାଙ୍ଗି ଦେଇଥିଲେ । ସେହି ଭଗ୍ନ ଅଣ୍ଡାରୁ ଅର୍ଦ୍ଧ ବିକଶିତ ବାଳକ ଅରୁଣ ଆବିର୍ଭୂତ ହୋଇଥିଲେ । ବିକାଶରେ ବାଧା ସୃଷ୍ଟି ହୋଇଥିବାରୁ ଅରୁଣ ମାତା ବିନତାଙ୍କୁ କଦ୍ରୁଙ୍କର ଦାସୀ ହେବା ପାଇଁ ଅଭିଶାପ ଦେଇ ଆକାଶକୁ ଉଡ଼ିଯାଇଥିଲେ । ପରବର୍ତ୍ତୀ କାଳରେ ସେ ସୂର୍ଯ୍ୟଦେବଙ୍କର ସାରଥୀ ଆସନ ମଣ୍ଡନ କରିଥିଲେ । ଦ୍ୱିତୀୟ ଅଣ୍ଡାଟି ସମୟକ୍ରମେ ପରିପକ୍ୱ ହୋଇ ସେଥିରୁ ଗରୁଡ଼ ଜନ୍ମଲାଭ କରିଥିଲେ । ସେ ଜନ୍ମରୁ ମହାପରାକ୍ରମଶାଳୀ ଓ ଅତ୍ୟନ୍ତ ତେଜସ୍ୱୀ ଥିଲେ ।

ମହାବୀର ପରମ ବିଷ୍ଣୁଭକ୍ତ ଗରୁଡ଼ କଦ୍ରୁଙ୍କର ଏକ ହଜାର ନାଗପୁତ୍ରଙ୍କୁ ସଂହାର କରିବା ସଂଗେସଂଗେ ମାତା ବିନତାଙ୍କୁ ଦାସତ୍ୱରୁ ଉଦ୍ଧାର କରିଥିଲେ । ପ୍ରକାଶ ଥାଉକି, ଗରୁଡ଼ ସେହିଦିନଠାରୁ ସର୍ପଙ୍କର ପ୍ରଧାନ ଶତ୍ରୁ ରୂପେ ବିଦିତ । ପିତା କଶ୍ୟପଙ୍କର ବର ପ୍ରଦାନ ଫଳରେ ପୁତ୍ର ଗରୁଡ଼ ସ୍ୱର୍ଗରେ ଦେବତାମାନଙ୍କୁ ପରାଜିତ କରି ଅମୃତ କଳସ ଆଣିବାରେ ସମର୍ଥ ହୋଇଥିଲେ । ସେ ନିତ୍ୟମୁକ୍ତ ଅଖଣ୍ଡ ଜ୍ଞାନ ସମ୍ପନ୍ନ ହୋଇଥିବାରୁ ଉଡ଼ିବା ସମୟରେ ତାଙ୍କ ପକ୍ଷରୁ ସାମଗାନ (ବେଦ) ଧ୍ୱନିମାନ ନିଃସୃତ ହୋଇଥାଏ । ଶ୍ରୀମଦ୍‌ଭାଗବତ ଗୀତାର ଦଶମ ଅଧ୍ୟାୟର ୩୦ତମ ଶ୍ଳୋକରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ।

'ବୈନତେୟଶ୍ଚ ପକ୍ଷିଣାମ ।'

ମୁଁ (ଶ୍ରୀକୃଷ୍ଣ) ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ ଅଟେ । ଗରୁଡ଼ ଅମୃତ କଳସ ନେଇ ଫେରୁଥିବା ସମୟରେ ତାଙ୍କ ଗତିପଥରେ ଅକସ୍ମାତ୍ ଭଗବାନ୍ ବିଷ୍ଣୁଙ୍କର ଆବିର୍ଭାବ ଘଟିଲା । ଗରୁଡ଼ଙ୍କର ତୀକ୍ଷ୍ଣ ବୁଦ୍ଧି, ତେଜସ୍ୱିତା ଓ ପ୍ରବଳ ପରାକ୍ରମ ଦେଖି ବିଷ୍ଣୁ ପ୍ରୀତ ହୋଇ ତାଙ୍କୁ ବର ପ୍ରଦାନ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସେ ବିଷ୍ଣୁଙ୍କ ମାୟାରେ ବିମୋହିତ ହୋଇ ଶରଣାପନ୍ନପୂର୍ବକ କହିଥିଲେ, ହେ ପ୍ରଭୁ ! ସର୍ବଦା ଆପଣଙ୍କ ଧ୍ୱଜାରେ ସ୍ଥାନ ଦିଅନ୍ତୁ ଓ ଅମୃତ ପାନ କରି ଅଜୟ ଅମର ହେବାକୁ ବର ପ୍ରଦାନ କରନ୍ତୁ । ବିଷ୍ଣୁ ତାଙ୍କ ଉପରେ ସୁପ୍ରସନ୍ନ ହୋଇ ସେହି ଦୁଇଟି ବର ପ୍ରଦାନ କରିଥିଲେ । ଭଗବାନଙ୍କର ବାହନ ହେବା ପାଇଁ ମଧ୍ୟ ସେ ବର ମାଗିଥିଲେ । ଏହିପରି ଗରୁଡ଼ ଭଗବାନଙ୍କର ଯୁଗ ଯୁଗ ଧରି ବାହନ ହୋଇ ରହିଗଲେ ଓ ରହିଥିବେ ମଧ୍ୟ ।

ମହର୍ଷି ବ୍ୟାସକୃତ ମହାଭାରତ ୩୩ ଅଧ୍ୟାୟ ୧୬/୧୭ ଶ୍ଳୋକରେ ଉଲ୍ଲିଖିତ-

'ଧ୍ୱଜଂ ଚ ଚକ୍ରେ ଭଗବାନୁପରି ସ୍ୱାସ୍ଥ୍ୟସୀତିତମ୍,
ଏବ ମସ୍ତିତି ତଂ ଦେବମୁକ୍ତ୍ୱା ନାରାୟଣଂ ଖଗଃ ।'

ତେଣୁ ଭଗବାନ ବିଷ୍ଣୁଙ୍କ ଧ୍ୱଜାରେ ଗରୁଡ଼ ଥିବାର ଦେଖାଯାଏ । ସେ ନିଜର ବୁଦ୍ଧି, କୌଶଳ ଓ ଶକ୍ତି ବଳରେ ବିଷ୍ଣୁଙ୍କର ବାହନ ହୋଇ ଜୀବନକୁ ସାର୍ଥକ କରିପାରିଛନ୍ତି । ସେଥିପାଇଁ ଆଜି ପ୍ରତ୍ୟେକ ବିଷ୍ଣୁ ମନ୍ଦିରରେ ଗରୁଡ଼ ସ୍ଥାନ ପାଇଛନ୍ତି ।

ଶ୍ରୀକ୍ଷେତ୍ରାଧୀଶ ଶ୍ରୀଜଗନ୍ନାଥ ସ୍ୱୟଂ ବିଷ୍ଣୁ ହୋଇଥିବାରୁ ପରମ ଭକ୍ତ ତଥା ଦାସ ଗରୁଡ଼ଙ୍କର ଆସ୍ଥାନ ସେଠାରେ ପ୍ରତିଷ୍ଠିତ ହୋଇ ବିଧିବିଧାନ ସହ ପୂଜା ପାଉଛନ୍ତି । ଶ୍ରୀଗରୁଡ଼ ସ୍ତମ୍ଭଟି ରତ୍ନସିଂହାସନଠାରୁ ୧୭୫ ମିଟର ଦୂରରେ ଏକ ସରଳରେଖାରେ ଆଧାରିତ ଜଗମୋହନ ପୀଠରେ ଅବସ୍ଥିତ । ଏହାର ପଛପଟେ ଭୋଗମଣ୍ଡପ ଅବସ୍ଥିତ । ଜଗମୋହନ ପୀଠର ଅନ୍ୟ ନାମ ନାଟ ମନ୍ଦିର ଅଟେ । ଏହି ନାଟ ମନ୍ଦିରରେ ବିଭିନ୍ନ ପ୍ରକାର ପାର୍ଶ୍ୱ ଦେବାଦେବୀ ଆସ୍ଥାନ ମଣ୍ଡନ କରିଛନ୍ତି । ସେଗୁଡ଼ିକ ହେଲା ଚର୍ଚ୍ଚା, ଗଣେଶ, ଖମ୍ବ ଗାୟତ୍ରୀ, ବକ୍ର ନାରାୟଣ, ଖମ୍ବ ବିମଳା, ଖମ୍ବ ନୃସିଂହ, ଖମ୍ବ ଦକ୍ଷିଣକାଳୀ, ଖମ୍ବ ଶୀତଳା, ସୁଗ୍ରୀବ, ବିଭୀଷଣ, ମଙ୍ଗଳା, ଚୈତନ୍ୟ, ଶ୍ରୀକୃଷ୍ଣ, ପଞ୍ଚମୁଖୀ ମହାଜୀଉ ଓ ଗରୁଡ଼ସ୍ତମ୍ଭ ଇତ୍ୟାଦି । ଏହିମାନଙ୍କ ମଧ୍ୟରେ ଶ୍ରୀଗରୁଡ଼ଙ୍କର ମହିମା ଓ ଗୁଣଗାରିମାର ପଟ୍ଟାନ୍ତର ନାହିଁ । କାରଣ ଯେପରି ପୌରାଣିକ ମତବାଦରେ ଶିବଙ୍କ ମନ୍ଦିରରେ ବାହନ ବୃଷଭଙ୍କୁ ଦର୍ଶନ ନକରି, ଶିବଙ୍କୁ ଦର୍ଶନ କଲେ ଭକ୍ତମାନଙ୍କର ମନସ୍କାମନା ପୂର୍ଣ୍ଣ ହୋଇନଥାଏ, ଠିକ୍ ସେପରି ପ୍ରଥମେ ଶ୍ରୀଗରୁଡ଼ଙ୍କୁ ଦର୍ଶନ ନକରି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ଫଳ ଲାଭ ହୋଇନଥାଏ ବୋଲି ପ୍ରବାଦ ଅଛି । ତେଣୁ ସମଗ୍ର ପୃଥିବୀର କୋଣ ଅନୁକୋଣରୁ ଆସୁଥିବା କୋଟି କୋଟି ଜଗନ୍ନାଥ ପ୍ରେମୀ ଭକ୍ତ ଲୋକାଚାର ମତରେ ପ୍ରଥମେ ଗରୁଡ଼ ସ୍ତମ୍ଭଙ୍କୁ ସ୍ପର୍ଶ କରନ୍ତି ଓ ଦୀପ ପ୍ରଦାନ କରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି ।

୧୦ ଫୁଟ ଉଚ୍ଚତା ୩ ଫୁଟ ଗୋଲେଇ ଆକାରର ଗରୁଡ଼ ସ୍ତମ୍ଭଟି ମନ୍ଦିର ନିର୍ମାଣର ପ୍ରାରମ୍ଭରୁ ବିଦ୍ୟମାନ । ଏହା କାଠରେ ନିର୍ମିତ





କିମ୍ବା ପଥରରେ ନିର୍ମିତ ତାହା ଆଜି ପର୍ଯ୍ୟନ୍ତ ଜଣାନାହିଁ । ଏହାର ବର୍ଣ୍ଣ ଦେଖିବାକୁ ଧବଳ ଅଟେ । ଏହାକୁ ସ୍ପର୍ଶ କଲେ ଜଣାଯାଏ, ତାହା ପଥର ଅପେକ୍ଷା ନରମ ଓ କାଠଠାରୁ ଶକ୍ତ ଅଟେ । ଗୋଟିଏ ପ୍ରସ୍ଫୁଟିତ ପଦ୍ମଫୁଲକୁ ଗୋଟିଏ ଲମ୍ବା ବୃନ୍ତ ସହିତ ଓଲଟାଇ ରଖିଲେ ଯେପରି ଦେଖାଯାଏ, ଏହାର ଆକାର ଠିକ୍ ସେପରି ଅଟେ । ଏହାର ନିମ୍ନ ଅଂଶଟି ଅଧିକ ଆୟତନ ବିଶିଷ୍ଟ ଅଟେ । ଶୀର୍ଷ ଅଂଶରେ ଦୁଇ ଫୁଟର ଏକ ଗରୁଡ଼ ପ୍ରତିମା ତପସ୍ୟାରତ ଅବସ୍ଥାରେ ଭଗବାନ ତିନି ଜୀଉଙ୍କୁ ଚାହିଁ ବସିଛନ୍ତି । ଏହି ପ୍ରତିମାଟି କଳା ମୁଗୁନି ପଥରରେ ନିର୍ମିତ । କେତେକ ଗବେଷକ ତଥା ଐତିହାସିକଙ୍କ ମତରେ ଏହି ଖମ୍ବରେ ନିହିତ ଅଛି ଏକ ମୂଲ୍ୟବାନ ରତ୍ନ-ଖଚିତ ମଣି । ସେହି ମଣିଟି ଭଗବାନ ବିଷ୍ଣୁଙ୍କର ପରମ ଆଦରଣୀୟ ଆଭରଣ ହୋଇଥିବାରୁ ତାହାର ସର୍ବଭୂତ ହିତକର ଅପାର ମହିମା ବର୍ଣ୍ଣନାତୀତ । ସେହି ଅପାର ମଣିକୁ ନିଜ ଶରୀରରେ ଗରୁଡ଼ ବହନ କରିଥିବାରୁ, ତାଙ୍କୁ ସ୍ପର୍ଶ କଲେ ନିଜର ଅଶେଷ ମଙ୍ଗଳ ସାଧିତ ହୋଇଥାଏ ଓ ଶ୍ରୀଜଗନ୍ନାଥଙ୍କ କୃପା ମିଳିଥାଏ । ତେଣୁ କୋଟି କୋଟି ଭକ୍ତ ଏହି ଖମ୍ବକୁ ଛାତିରେ ଲଗାଇ ଥାଆନ୍ତି । ଏହି ଖମ୍ବର ସବୁଠାରୁ ପ୍ରଧାନ ବିଶେଷତ୍ୱ ହେଲା ଅମାବାସ୍ୟା, ସଂକ୍ରାନ୍ତି, ଶନିବାର, ମଙ୍ଗଳବାର ଆଦି ତିଥିରେ ଭକ୍ତମାନେ ତାଙ୍କ ସ୍ନାନ ଜଳକୁ ସର୍ବରୋଗର ନିବାରଣ ପାଇଁ ସେବନ କରିଥାନ୍ତି । ପ୍ରତିଦିନ ସକାଳେ ୩ ଠାକୁରଙ୍କୁ ସ୍ନାନ କରାଯିବା ପରେ ଭକ୍ତ ଗରୁଡ଼ଙ୍କୁ ସ୍ନାନ କରାଯାଇଥାଏ । ଏହା ୧୦ ଫୁଟ ଉଚ୍ଚତା ବିଶିଷ୍ଟ ହୋଇଥିବାରୁ ସେବକମାନେ ଏକ କାଠ ନିଶୁଣୀ ମାଧ୍ୟମରେ ତାଙ୍କୁ ସ୍ନାନ କରାଇଥାଆନ୍ତି ।

ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ସେବାୟତମାନେ ଶ୍ରୀଗରୁଡ଼ଙ୍କର ପୂଜକ ଅଟନ୍ତି ଏବଂ ସେହିମାନେ ନୀଳଚକ୍ରରେ ବାନା ବାନ୍ଧିବା ସଂଗେସଂଗେ ମନ୍ଦିରରେ ଚୂନ ଧଉଳେଇବା କାର୍ଯ୍ୟ କରିଥାନ୍ତି । ସେମାନଙ୍କୁ ଗରୁଡ଼ ସେବାୟତ ବା ଚୂନରା କୁହାଯାଏ । ସେହି ଚୂନରାମାନଙ୍କ ମଧ୍ୟରେ କେତେକ ଶାଢ଼ୀ ପିନ୍ଧା ସେବାୟତ ଭାବରେ ପରିଚିତ । ମନ୍ଦିର ପରମ୍ପରା ଅନୁସାରେ କେବଳ ବିବାହିତ ଓ ପୁରୁଖା ସେବୟତମାନେ ଶାଢ଼ୀପିନ୍ଧା ସେବାୟତ ହୋଇଥାଆନ୍ତି । ଶାଢ଼ୀପିନ୍ଧା ସେବାୟତମାନେ କେବଳ ଗରୁଡ଼ସ୍ତମ୍ଭର ସେବା କାର୍ଯ୍ୟ କରିଥାଆନ୍ତି ।

ଜଗନ୍ନାଥ ଧାମର ପୀଠାଧୀଶ ତଥା ଶ୍ରୀଜଗନ୍ନାଥ ଯେପରି ସମସ୍ତ ଠାକୁରଙ୍କ ମଧ୍ୟରେ 'ବଡ଼' ଆଖ୍ୟାରେ ଆଧାରିତ ହୋଇଥାନ୍ତି ଯଥା ବଡ଼ଠାକୁର, ବଡ଼ଦେଉଳ, ବଡ଼ଦାଣ୍ଡ, ବଡ଼ଚୂଳ ଇତ୍ୟାଦି ଠିକ୍ ସେପରି ସମସ୍ତ ଗରୁଡ଼ମାନଙ୍କ ମଧ୍ୟରେ ସେହି ପୀଠର ଗରୁଡ଼ସ୍ତମ୍ଭ ମଧ୍ୟ ବଡ଼ । ସେ ହେଉଛନ୍ତି ଅନ୍ୟତ୍ର ବିଦ୍ୟମାନ ଗରୁଡ଼ଙ୍କ ମଧ୍ୟରେ ସକଳ ଶକ୍ତିର ଆଧାର, ସର୍ବ ଫଳଦାୟକ, ଦୟା ଓ କରୁଣାର ସାଗର ଓ ଦୁଃଖୀରଙ୍କିଙ୍କର ପରମ ବନ୍ଧୁ । ସେ ଯେପରି ସାକ୍ଷାତ ବିଷ୍ଣୁ ବା ଶ୍ରୀଜଗନ୍ନାଥଙ୍କର ସାନିଧ୍ୟ ଲାଭ କରି ଜୀବନଟିକୁ ସାର୍ଥକ କରାଇପାରିଛନ୍ତି ।

ଘ.ନଂ.- ଟୁ.ଆର୍.ଏ. ୩୫/୭
ଆଠ ନମ୍ବର, ଭୁବନେଶ୍ୱର

---



# ରଥଯାତ୍ରା

ଗୁରୁକଲ୍ୟାଣ ମହାପାତ୍ର

କାହିଁକି କେଜାଣି
ରଥ ଉପରେ ଥିବା ବେଳେ ତମେ ପ୍ରଭୁ,
ମୁଁ ଦର୍ଶନ କଲେ ନିବିଷ୍ଟ ଚିତ୍ତରେ
କିମ୍ବା କାତର ହୋଇ ପ୍ରାର୍ଥନା କଲେ,
କିଛି ମାଗି ପାରେ ନାହିଁ ତମକୁ,
ସେ ଶରଧା ବାଲି ହେଉ ବା ନିଜପାଇଁ
ଆଉ କିଛି ହେଉ ।

ଇତିହାସର ଘଟଣାକ୍ରମ ଲମ୍ୱିଥାଏ-
ତମରି ଅଜସ୍ର କାହାଣୀ ଓ କିମ୍ବଦନ୍ତୀରେ ।
ମୋର ନଥାଏ ବ୍ୟାକୁଳତା ସେଥିପ୍ରତି,
କିନ୍ତୁ ତମେ ରଥାରୂଢ଼ ହେବାବେଳେ



ତମରି ଦର୍ଶନ କରିବା ମାତ୍ରେ
ତମରି ନିତ୍ୟଲୀଳା ଚାଲିଥିବା
ଅପୂର୍ବ ଧାମରେ ପ୍ରବେଶ କରିବା ପରି
ମନେହୁଏ ମୋର ।
କି ଅନନ୍ୟ, ଅନିର୍ବଚନୀୟ ଆଉ
ଅମୃତୋପମ ଅନୁଭୂତି ସତେ !

ମୁଁ ପୁଲକିତ ହୋଇଯାଏଁ ପୁଣି
ଗଭୀର ଭକ୍ତିରେ ପ୍ରଣିପାତ କରେ ତେଣୁ
ବିନୟ ପୁରଃସର-ଆଉଥରେ, ଆଉଥରେ ।।

ଡି-୧୦/୫, ୟୁନିଟ୍-୮
ଭୁବନେଶ୍ୱର-୧୨





# ଅନୁଭବରେ ଶ୍ରୀଜଗନ୍ନାଥ

ଦାମୋଦର ପାଢ଼ୀ

ଅନନ୍ତ, ପରଂବ୍ରହ୍ମ ନାରାୟଣ ଜଗତର ନାଥ ପ୍ରଭୁ ଶ୍ରୀ ଶ୍ରୀ ଜଗନ୍ନାଥ ଦାରୁବ୍ରହ୍ମ, ଦାରୁଦେବତାରୂପେ ବିଶ୍ୱବିଦିତ । ଚକାଡ଼ୋଳିଆ କଳାବଦନରେ ଅପଲକ ନୟନରେ ସମଗ୍ର ବିଶ୍ୱକୁ ଚାହିଁରହିଛି । ହାତ ନାହିଁ, ଗୋଡ଼ ନାହିଁ, କାନ ନାହିଁ, ହେଲେ ଏକାଗ୍ର ଭାବେ ସବୁକିଛି ଭକ୍ତଙ୍କୁ ସମର୍ପି ଦେଇ ଲୀଳା ଦେଖୁଛି । ପାପ-ପୁଣ୍ୟ, କରଣୀୟ ଅକରଣୀୟ ନିମନ୍ତେ ମନୁଷ୍ୟକୁ ସୁଯୋଗ ଦେଇଛି । ଚିନ୍ତା, ଚେତନା, ଭାବନା ବିବେକାନୁମୋଦିତ ସାଂସାରିକ କର୍ମ ସମ୍ପାଦନା ନିମନ୍ତେ କାଳିଆ ଠାକୁର ମନୁଷ୍ୟକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଛି । ପାପ କର, ପୁଣ୍ୟକର କିମ୍ବା ଠାକୁରଙ୍କ ନାମରେ ଅନ୍ୟକୁ ଲୁଟ୍ କର, ଦୁର୍ନୀତିକର, ପ୍ରାଣାନ୍ତକ ଆକ୍ରମଣ କରି ଆତଙ୍କ ଖେଳାଅ କିନ୍ତୁ କାଳିଆ କିଛି କହେ ନାହିଁ । କେବଳ ସନ୍ଦେଶ ଦେଇଛି - 'ତୁମ କୃତ କର୍ମ ତୁମେ ଭୋଗିବ । ଏ ଯୁଗରେ ମୁଁ କେବଳ ଆଖି ତରାଟି ଦେଖୁଥିବି । ନା କହିବି, ନା କରିବି । ମୋର ହାତ ଗୋଡ଼ କିଛି ନାହିଁ ।' ବାସ୍ତବରେ ଏହା ହିଁ ସତ୍ୟ । କାଳିଆ ଠାକୁର ହିଁ ସତ୍ୟ ।



କଳାପାହାଡ଼, ତକି ଖାଁ, ଦଶରଥ ଖାଁ ଓ ଅନ୍ୟାନ୍ୟ ବିଧର୍ମୀମାନେ ଉଗ୍ରବାଦର ଚେହେରାରେ ଆତଙ୍କ ଖେଳାଇଲେ । ପ୍ରଭୁଙ୍କୁ ଇତସ୍ତତଃ ଭାବେ ଗୋପନ ନୀଳା ନିମନ୍ତେ ନିଆଗଲା । କିନ୍ତୁ ପ୍ରଭୁ ନିଜେ କିଛି କଲେ ନାହିଁ । ସେ ତ ମୌନ ଦାରୁ ଦେବତା । ମୌନ ହୋଇ ସବୁ ଦେଖନ୍ତି । ପୁରୁଷୋତ୍ତମ ଦେବ ପ୍ରଥମ କାଞ୍ଚି ଅଭିଯାନରେ ପରାସ୍ତ ହୋଇ ଅପମାନିତ ହେଲେ । ଗ୍ଲାନି ଜର୍ଜରିତ ମନରେ ତୁମକୁ ଚାହିଁ କେତେ କାନ୍ଦିଲେ । ସ୍ୱପ୍ନରେ ପୁନର୍ବାର କାଞ୍ଚି ଅଭିଯାନରେ ଯିବାକୁ ଆଦେଶ ଦେଇ କଳାଧଳା ଘୋଡ଼ାରେ ଦୁଇଭାଇ କାଞ୍ଚି ଅଭିମୁଖେ ଅଭିଯାନ କରି କାଞ୍ଚି ନରେଶଙ୍କୁ ପରାସ୍ତ କଲେ । ଭକ୍ତର ଭକ୍ତି ଅଶ୍ରୁରେ କାଳିଆ ସର୍ବଦା ବନ୍ଦୀ । ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚିବିଜୟ ସହ ଅଭିଯାନ ପ୍ରାରମ୍ଭରେ ମାଣିକ ପାଟଣାରେ ମାଣିକ ଗୌଡୁଣୀଠାରୁ ଭକ୍ତିର ଅର୍ଘ୍ୟ ସଦୃଶ ଦହି ଖାଇ ଦହିର ମୂଲ୍ୟରେ ରତ୍ନ ମୁଦି ଦେବା, କାଳିଆ ଠାକୁରର ଅପାର ମହିମା ଉପରେ ଆଲୋକପାତ କରୁଛି । ନିଜସ୍ୱ ଭକ୍ତି ଅନୁଭବରୁ ଦୁଇପଦ ନ ଲେଖିଲେ ଆତ୍ମାଶାନ୍ତି ପାଇବ ନାହିଁ । ବାସ୍ତବରେ ପ୍ରଭୁଙ୍କର ଅପାର ଅଦୃଶ୍ୟ ମହିମା ଅନୁଭବୀ ଅନୁଭୂତିରୁ ଜାଣିପାରିବ ।

ବାଲ୍ୟାବସ୍ଥାରୁ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତିଙ୍କୁ ଚିକିଟା ମାଟିରେ ରଥଯାତ୍ରା ପୂର୍ବରୁ ତିଆରି କରିବାକୁ ଜେଜେମା ଓ ବୋଉକୁ ଅଝଟ କରି କହି ତିଆରି କରାଏ । କାଳିଆକୁ କଳା ରଙ୍ଗ, ବଳଭଦ୍ରଙ୍କୁ ଖଡ଼ି ଗୁଣ୍ଡରେ ଧଳା ରଙ୍ଗ ଓ ସୁଭଦ୍ରାଙ୍କୁ ହଳଦୀ ରଙ୍ଗରେ ହଳଦିଆ କରି ମାଟିରେ ରଥର ଚକ ତିଆରି କରି ଖରାରେ ଶୁଖାଇ ରଥ କରି ଗୁଣ୍ଡିଚା ଦିନ ମୋ ଗାଁ ପୋଲସରା ସାହି ଦାଣ୍ଡରେ, ଘର ବାରଣ୍ଡାରେ ରଥ ଟାଣିବା ଓ ଜଗନ୍ନାଥଙ୍କ ପହଣ୍ଡି ବିଜେ କରାଇବାକୁ ଭାରି ଭଲ ଲାଗେ । କ୍ରମଶଃ ଜଗନ୍ନାଥଙ୍କ ଅଲୌକିକ ମହିମା ଉପରେ ଆଧାରିତ 'ଶ୍ରୀଜଗନ୍ନାଥ' କଳାଧଳା ଓଡ଼ିଆ ଚଳଚ୍ଚିତ୍ର ଗାଁ ଭ୍ରାମ୍ୟମାଣ ସିନେମା ତମ୍ବୁରେ ଦେଖି ପ୍ରଭାବିତ ହେଲି । ଗୋସେଇଁ ମା' ପ୍ରତି କାର୍ତ୍ତିକ ମାସରେ ଶ୍ରୀକ୍ଷେତ୍ର, ପୁରୀକୁ ହବିସ କରିବାକୁ ଆସିଥାନ୍ତି । ମାସ ଶେଷରେ ଫେରିବା ବେଳେ ତିନି ଠାକୁରଙ୍କ ପ୍ରତିମୂର୍ତ୍ତି, ଲାଲ ବେତବାଡ଼ି ପ୍ରଭୃତି କିଣି ନେଇଥାନ୍ତି । ଲକ୍ଷ୍ମୀପୁରାଣକୁ ଘରେ ମାଣବସା ସମୟରେ ପଢ଼ିବା ବେଳେ ଶ୍ରୀଜଗନ୍ନାଥଙ୍କ ଲୀଳା ହୃଦୟକୁ ସ୍ପର୍ଶ କରିଥାଏ । ବିଭିନ୍ନ ସୁଯୋଗରେ କାଳିଆ ଠାକୁରଙ୍କ ଡୋରିରେ ଶ୍ରୀକ୍ଷେତ୍ରକୁ ଆସିବାକୁ ସୁଯୋଗ ପାଇଛି । ଏହିପରି ଭାବେ କୋରାପୁଟର ଶାବର ଶ୍ରୀକ୍ଷେତ୍ରରେ କାଳିଆର ଲୀଳାକ୍ଷେତ୍ର ଆରମ୍ଭ ହେବା ଅବସରରେ ନୂତନ ମନ୍ଦିର ନିର୍ମାଣ ବେଳେ ଘୋଷଯାତ୍ରାର ଧାରାବିବରଣୀ ଦେଇ ପାରିଥିଲି । ବୌଦ୍ଧରେ ୧୯୯୨ରୁ ୧୯୯୭ ମଧ୍ୟରେ ପ୍ରତ୍ୟେକ ରଥଯାତ୍ରାରେ କାଳିଆର ଭକ୍ତ ସହ ଲୀଳା